# ଟିମା ଫକୀର

(ଗଳ୍ପ ସଂକଳନ)

ଡକ୍ଟର କୃତ୍ତିବାସ ନାୟକ

ଅରୁଣ-ତରୁଣ
ରାଉରକେଲା-୪୨

# ଟିମା ଫକୀର

(ଗଳ୍ପ ସଂକଳନ)

ଡକ୍ଟର କୃତ୍ତିବାସ ନାୟକ


ପ୍ରକାଶକ : ଅରୁଣ-ତରୁଣ
ଆକାଶବାଣୀ ମାର୍ଗ,
ରାଉରକେଲା - ୭୬୯ ୦୪୨
ଫୋନ- (୦୬୬୧) ୪୪୭୦୩୯୬

ଅକ୍ଷରସଜ୍ଜା : ଭେଙ୍ଗୀ ଗ୍ରାଫିକ୍ସ, ରାଉରକେଲା-୫
ଫୋନ -(୦୬୬୧) ୪୬୪୬୯୫୩

ମୁଦ୍ରଣ : ଜଗନ୍ନାଥ ପ୍ରୋସେସ୍, କଟକ

ପ୍ରଥମ ସଂସ୍କରଣ ୨୦୦୨

ମୂଲ୍ୟ : ଟ୫୦ (ପଚାଶ ଟଙ୍କା ମାତ୍ର)

I.S.B.N. No. - 81- 87968 - 11- 7

'TIMA FAKIR' *Story Collection by* Dr. KRUTTIBAS NAYAK



# ସୂଚୀପତ୍ର



# ମୋ ନିଜ କଥା

ମୁଁ ପିଲାଙ୍କ ପାଇଁ ଗଳ୍ପ ଲେଖେ। ବିଜ୍ଞାନ ଗଳ୍ପ, ପରିବେଶ ଗଳ୍ପ ଓ ଶିକ୍ଷଣୀୟ ଗଳ୍ପ ଲେଖି ଜଣେ ଶିଶୁ ଗାଳ୍ପିକ ଭାବେ ପରିଚିତ ହେଇ ଯାଇଥିଲି। ଜାତୀୟ ସ୍ତରରେ ମୋର ପିଲାଙ୍କ ଗଳ୍ପ "ବଣଭୋଜି" ୧୯୯୨ରେ ମୋତେ ସ୍ୱୀକୃତି ଦେଇ ସାରିଛି।

'ଆକାଶବାଣୀ'କୁ ଆସିବା ପରେ ବଡ଼ମାନଙ୍କ ପାଇଁ ଗଳ୍ପ ଲେଖିବାକୁ ସୁଯୋଗ ମିଳିଲା। ସେଥିରେ ସାମାଜିକ ସମସ୍ୟାମାନ ସ୍ଥାନ ପାଇଲା। ଗଳ୍ପଗୁଡ଼ିକୁ ଟିକେ ରସାଳ କରିବାକୁ ସେଥିରେ ଲଳିତ ଶୈଳୀ ପ୍ରୟୋଗ କଲି। ବେଶ୍ ଲୋକପ୍ରିୟତା ହାସଲ କରିଥିଲା, ମୋର ଗଳ୍ପଧାରା - 'ଆଜିର ଭାବନା'।

'ଧରିତ୍ରୀ' ସେଗୁଡ଼ିକୁ ଧାରାବାହିକ ଭାବେ ପ୍ରକାଶ କଲେ, 'ଦର୍ପଣ' ସ୍ତମ୍ଭରେ। ଦୁଇ ବର୍ଷ କାଳ ସ୍ତମ୍ଭକାର ଗାଳ୍ପିକ ଭାବେ ବେଶ୍ କେତେଜଣଙ୍କ ବନ୍ଧୁଙ୍କର ଈର୍ଷାର ପାତ୍ର ହେଇ ଯାଇଥିଲି। ପରେ ସେଗୁଡ଼ିକ ଦୁଇଟି ଲଳିତ ଗଳ୍ପ ସଂକଳନ, ଯଥା - **ସଦାନନ୍ଦବାବୁଙ୍କ 'ସଂସାର' ଓ 'ଶୁଣିମା ହେଉ'** ନାମରେ ପ୍ରକାଶିତ ହୋଇ ଯଥେଷ୍ଟ ପାଠକୀୟ ଶ୍ରଦ୍ଧା ମଧ୍ୟ ହାସଲ କରି ସାରିଛି।

ମଝିରେ ମଝିରେ ବଡ଼ମାନଙ୍କ ପାଇଁ ବି ଗଳ୍ପ ଲେଖେ। ବିଭିନ୍ନ ପତ୍ରପତ୍ରିକାରେ ତାହା ପ୍ରକାଶ ପାଇଥାଏ ସତ; କିନ୍ତୁ ମୋତେ ଜଣେ ଗାଳ୍ପିକ ଭାବେ ସଂପାଦକମାନେ ଗ୍ରହଣ କରି ନାହାନ୍ତି ବୋଲି ମୁଁ ଅନୁଭବ କରିଛି।

ବନ୍ଧୁ ସଦାନନ୍ଦ ତ୍ରିପାଠୀ ଜଣେ ବିଶିଷ୍ଟ ଗାଳ୍ପିକ। ସେ ମୋର ପାରିବା ପଣିଆକୁ କେମିତି କ'ଣ ଉପଲବ୍ଧି କଲେ କେଜାଣି, ହଠାତ୍ ପ୍ରସ୍ତାବ ଦେଲେ, "ଆପଣ ବଡ଼ମାନଙ୍କ ପାଇଁ ଗଳ୍ପଟିଏ ଆମ ଶ୍ରେଷ୍ଠ ଗଳ୍ପ ସଂକଳନ ପାଇଁ ଦିଅନ୍ତୁ।

ସେତେବେଳେ 'ତୁଷାର୍ତ୍ତ ସାଗର' ଗଳ୍ପର ବିଷୟବସ୍ତୁ ମୋ ମନ ଭିତରେ ଉବୁଟୁବୁ ହେଉଥିଲା। ଲେଖାଟି ପ୍ରସ୍ତୁତ କରି ତାଙ୍କୁ ଦେଇଦେଲି। ପ୍ରକାଶ ପାଇଲା। ସେଇଥିରୁ ପ୍ରେରଣା ପାଇଲି।

ତା'ପରେ ଆହୁରି ଅନେକ ଗଳ୍ପ ମୋତେ ଅସ୍ତବ୍ୟସ୍ତ କଲେ। ଦିଲ୍ଲୀ ଗସ୍ତ କାଳରେ ନିରୋଳା ସ୍ଥାନ ପାଇଲି। ବନ୍ଧୁମାନଙ୍କ ଉତ୍ସାହରେ ଆଠଟି ଗଳ୍ପ ଲେଖି ଦେଇଥିଲି। ପୁଣି କର୍ସିୟାଙ୍ଗ୍‌ରେ ସେହିଭଳି ସୁଯୋଗ ମିଳିଗଲା। ତାକୁ ଉପଯୁକ୍ତ ଭାବେ ବିନିଯୋଗ କଲି। ସେଇଠୁ ସୃଷ୍ଟି ହେଲା, ମୋର ଏହି ତୃତୀୟ ଗଳ୍ପ ସଂକଳନ।

ପାଠକମାନଙ୍କୁ ମୋର ଗଳ୍ପ ବିଷୟରେ କିଛି କହିବାର ନାହିଁ। ମୋ ଗଳ୍ପ ହିଁ ସେଇ ସବୁ କଥା କହି ଦେଇ ପାରିବ।

**ଅଗଷ୍ଟ-୨୦୦୨**

ବିନୀତ ଗାଳ୍ପିକ
**କୃତ୍ତିବାସ ନାୟକ**

# ଟିମା ଫକୀର



ପିଲା ଦିନର ସବୁ ଘଟଣାକୁ ମନେ ରଖିବା, କିଛି ଦରକାର ନଥାଏ। କିନ୍ତୁ ଗୋଟାଏ ଗୋଟାଏ ଛୋଟ ଘଟଣା କାହିଁକି କେମିତି ମନ ଭଣ୍ଡାରରେ ଲୁଚି ରହି ଯାଇଥାଏ। ଅନୁରୂପ ଘଟଣା କିମ୍ବା ଅନୁରୂପ ମଣିଷକୁ ଦେଖିଲେ, ସେ ସବୁ ସ୍ମୃତିପଟକୁ ଆପେ ଆପେ ଆସିଯାଏ।

ସେହିଭଳି ଘଟଣାଟିଏ। ଟିମା ଫକୀରକୁ ମୋ ବୋଉ ଭାରି ବିଶ୍ୱାସ କରେ। ଆମର ଦେହ ପା'ଟିକେ ଖରାପ ହେଲେ ଟିମା ଫକୀର ଧୂଳି ପକେଇ ଝାଡ଼ି ଦିଏ। ଆମର ପରୀକ୍ଷା ଫଳ ବାହାରିବା ବେଳ ହେଲେ, ପୀରବାବାଙ୍କ ପାଖକୁ ବୋଉ ନଡ଼ିଆ ପଠାଏ, ସେହି ଟିମା ଫକୀର ହାତରେ। ସେ ନଡ଼ିଆଟାକୁ ଧରୁ ଧରୁ ଆଗ ତା'ର ଚୂଳଟାକୁ ଉପାଡ଼ି ପକାଏ। ତା'ପରେ ମୁଣ୍ଡରେ ଛୁଆଁଏ, ତାକୁ ମୁଣାରେ ପୂରାଏ। ପୁଣି ଭିକ ମାଗି ମାଗି ଆଗକୁ ଚାଲିଯାଏ।

ଆମ ଭାଇ ଭଉଣୀଙ୍କର ପ୍ରତ୍ୟେକ ଜନ୍ମ ଦିନରେ ସତ୍ୟପୀର ପୂଜା ହୁଏ। ଟିମା ଫକୀର ସେଦିନ ତାଙ୍କ ଘରକୁ ଫେରେ ନାହିଁ। ପୂଜା ଦେଖି ସିରିଣି ଖାଏ। ଆମେ ତା'ଠାରୁ ଆଶିର୍ବାଦ ନେଇ, ତା'ପାଦ ତଳେ ପଇସା ଭେଟି ଦେଉ। ମୋ ବୋଉ ଦୃଷ୍ଟିରେ ସେ ହଉଛି, ଚଳନ୍ତି ପୀରବାବା। ଛୋଟିଆ ଛୋଟିଆ ସମସ୍ୟାରେ ମୋ ବୋଉ ବିଭିନ୍ନ ପ୍ରକାର ମାନସିକ କରି ପକାଏ। ସେ ମାନସିକ ଜିନିଷକୁ ଟିମା ଫକୀରକୁ ଦେଇ ଆତ୍ମ ସନ୍ତୋଷ ଲାଭ କରେ।

ଥରେ ଆମ ଗାଈ ଚରିବାକୁ ଯାଇଥିଲା ଯେ, ରାତି ଅଧା ଯାଏ ଫେରିଲା ନାହିଁ। ଗୁରୁବାର ପରା ରାତିରେ ଗୋରୁ ମାତା ଘରକୁ ଫେରି ନାହିଁ। ମୋ ବୋଉ ମନ ଗୋଳେଇ ଘାଣ୍ଟି ହେଲା । ତା'ମନକୁ ପାପ ଛୁଇଁଲା। ଆମକୁ ପଠେଇ ଗାଆଁ ମୁଣ୍ଡ, ପଡ଼ିଆ, ଦଣ୍ଡା, ଚକଡ଼ା, ଗୋହିରି, ପୋଖରୀ ଆଡ଼ି ଖୋଜେଇଲା। ଗାଈ ଫେରି ନାହିଁ, ତେଣୁ ସେ ରାତିରେ ଉପାସ ରହି ଠାକୁରଙ୍କ ପାଖରେ ଅଧିଆ ପଡ଼ିଲା। ପୀରବାବାଙ୍କୁ ନଡ଼ିଆ ଯାଚି ମାନସିକ କଲା।

ଗାଈଟା ସକାଳୁ ସକାଳୁ ଆସି ଆମ ଦୁଆରେ ହମ୍ବାଳିଲା। ମୋ ବୋଉର ଦୃଢ଼ ବିଶ୍ୱାସ ଆଉ ପୀରବାବାଙ୍କ ମହିମା ଦେଖି ଆମେ ଆଶ୍ଚର୍ଯ୍ୟ ହେଇଯାଉ ।

କେତେଦିନ ପରେ ଆମ ଗାଈ ଭୂତଛୁଆଟାଏ ଜନ୍ମ କଲା। ତା'ପୂର୍ବରୁ ସେ ଦୁଇଥର ମଲା ବାଛୁରି ଜନ୍ମ କରିଥିଲା। ତେଣୁ ବାପା ସେ ଗାଈକୁ ବିକି ଦେବାକୁ ପ୍ରସ୍ତାବ ଦେଲେ। ଟିମା ଫକୀର ଏ'କଥା ଶୁଣି ବୋଉକୁ ପରାମର୍ଶ ଦେଲା, 'ଗାଈ ଗୋରୁ, ଛେଳି ମେଣ୍ଢା, ଏମାନେ ହେଲେ, ପରିବାରର ଜଣେ ଜଣେ। ଘରେ ଯଦି କାହାର ଦେହ ପା' ଖରାପ ହେଇଯିବ, ତାଙ୍କୁ କ'ଣ ତମେ ଘରୁ ବାହାର କରିଦେବ, ନା' ଔଷଧ ପତ୍ର ଦେଇ ଭଲ କରିବ ? ?'

ଟିମା ଫକୀର କଥାଟା ବୋଉର ମର୍ମକୁ ଭେଦିଗଲା। ସେ ପୁଣି ମାନସିକ କରି ପକାଇଲା। "ଯଦି ଏଥର ବାଛୁରିଟି ବଞ୍ଚି ଜୀଇଁକି ରହେ, ତାକୁ ପୀରବାବାଙ୍କୁ ସେ ବାଛୁରୀକୁ ଦେଇଦେବି।"

ସେହିବର୍ଷ ସତକୁ ସତ ଅଣ୍ଡିରା ବାଛୁରିଟା ଜନ୍ମ ହେଇ ବଞ୍ଚିକି ରହିଲା। ମୁଁ ତା'ନାଆଁ ଦେଇ ଦେଲି ବାସୁଆ । କ୍ଷୀର ଛାଡ଼ିଲା ପରେ ବୋଉ ବାସୁଆକୁ ଟିମା ଫକୀର ମାଧ୍ୟମରେ ପୀରବାବାଙ୍କ ପାଖକୁ ପଠେଇ ଦେଲା। ନହେଲେ ତା'ର ମାନସିକ ଅସତ୍ୟ ହେଇ ଯାଇଥା'ନ୍ତା।

ଗାଁରେ ଯିଏ ଶୁଣିଲା, ସେ ବିରକ୍ତ ହେଲା। ଅଳସୁଆ ବଳଦ ହଳରେ ଶୋଇଲେ, ଆମ ଗାଁ ଲୋକେ କହନ୍ତି, "ଶଳା ! ଠାପୁଆ ବଳଦଟାକୁ ପଠାଣକୁ ବିକିବି।"

ପଠାଣକୁ ବିକିବା ଅର୍ଥ ବୁଝିଲା ବେଳକୁ ମୋ ଦେହର ରକ୍ତ ଶୁଖିଗଲା। ଆମ ବାଛୁରିଟା ପୁଣି କଟା ହେଇ ବିକ୍ରି ହବ। ତାକୁ ସେମାନେ ବିଫ୍ କରିବେ। କେତେ ପାପ କାମଟା ମୋ ବୋଉ କରି ପକାଇଲା ସତେ !

ଏଣେ ଟିମା ଫକୀର ଉପରେ ଆମ ବିଶ୍ୱାସ ଅତୁଟ ରହିଥାଏ। ଏମିତି ଲୋକଙ୍କ କଥା ବେଳେ ବେଳେ ସେ ବିଶ୍ୱାସରେ ବିଷ ମିଶେଇ ଦିଏ।

ଯେଉଁ ଦିନ ଟିମା ଫକୀର ଆମ ଗାଆଁକୁ ଆସେ, ଆମେ ପଚାରି ବସୁ - "ଆମ ବାସୁଆ କେମିତି ଅଛି ? ତା'ଶିଙ୍ଗ ଉଠିଲାଣି ନା ନାହିଁ ? ?" ଏଇମିତି ଅନେକ ପ୍ରଶ୍ନ।

ଟିମା ଫକୀର ସବୁ ପ୍ରଶ୍ନର ଉତ୍ତର ସୁନ୍ଦର ଭାବରେ ବୁଝେଇ ବୁଝେଇ କହିଦିଏ। "ବାସୁଆର ଦେହ ଭଲ ଅଛି। କାଲି ତାକୁ କୁର୍ମି ଔଷଧ ଦେଇଥିଲି। ତା'ଶିଙ୍ଗ ଦୁଇଟା ଗଜା ହେଲାଣି। କାଲି ପରା ଗୋଟାଏ ଛୁଆକୁ ଭୁଷି ଦେଇଛି। ଭାରି ଚଗଲା ହେଲାଣି। ପୀରବାବୁଙ୍କ ପାଖରେ ଶୋଇ ରହୁଛି। ତା'ର ଦିଇଟା କୁକୁର ସାଙ୍ଗ ଅଛନ୍ତି। ମଜାରେ ଖାଇପିଇ ରହିଛି। ମୋଟା ବି ହେଇଗଲାଣି।"

ବାସୁଆ ଖବର ଶୁଣି ଆନନ୍ଦରେ ମୋ ବୋଉର ଆଖିରୁ ଲୁହ ଗଡ଼ିପଡ଼େ। ପୀରବାବୁଙ୍କୁ ହାତ ଯୋଡ଼ି କହେ - "ମାନସିକ କରିଥିଲି ବାବା ! ତମରି ଦୟାରୁ ବାସୁଆଟିକୁ ପାଇଥିଲି। ତାକୁ ତମରି ପାଖକୁ ପଠେଇ ଦେଇଛି। ତାକୁ ବଞ୍ଚେଇକି ରଖିଥିବ। ତା'ଉପରେ ଯେମିତି କାହାରି ପାପଦୃଷ୍ଟି ନପଡ଼େ।"

ସେହିଦିନ ବୋଉ ଗୋଟାଏ ଡେଉଁରିଆ ଆଣି ଟିମା ଫକୀରକୁ ଦେଇ କହିଲା - "ବାବା ! ମୋ ପୁଅକୁ ଯେମିତି ମନ୍ତୁରା ଧୂଳି ଦେଇଥିଲ, ସେଇମିତିକା ଧୂଳି ଟିକେ, ଏଇ ଡେଉଁରିଆରେ ପୁରେଇ ବାସୁଆ ବେକରେ ବାନ୍ଧି ଦବ।"

ଏହା ଭିତରେ ଦି'ମାସ ବିତି ଗଲାଣି, ଟିମା ଫକୀରର ଦେଖା ନାହିଁ। ମୋ ବୋଉ ଭାରି ବ୍ୟସ୍ତ। ମୋତେ ଜଗେଇଥାଏ। ସ୍କୁଲରୁ ଫେରିବା ବେଳେକୁ ଗାଁ ଯାକର ଲୋକଙ୍କ ଦୁଆରକୁ ଚାହିଁ ଚାହିଁ ଆସେ। ମୋ ସାଙ୍ଗ ପିଲାଙ୍କୁ ବି ପଚାରେ, ସମସ୍ତେ କହନ୍ତି - "ଆମେ ତ କାହିଁ କେବେ ଦେଖୁନୁ।"

ବୋଉର ବ୍ୟସ୍ତତା ଦେଖି ଦିନେ ବାପା କହିଲେ - "ଟିମା ଫକୀର ତ ବୁଢ଼ା ଲୋକ । ତା' ଦେହପା' ଖରାପ ହେଇଥିବ। ଭଲ ହେଇଗଲେ, ବଳେ ଆସିବ ନାହିଁକି ?"

ମୋ ବୋଉ ପୀରବାବାଙ୍କୁ ହାତଯୋଡ଼ି ଫକୀରଙ୍କ ପାଇଁ ପ୍ରାର୍ଥନା କରେ। ପୁଣି ନଡ଼ିଆ ଯାଚି ମାନସିକ କରେ, 'ବୁଢ଼ା ଫକୀରକୁ ଭଲରେ ରଖିଥିବ ବାବା। ସେ ଆସି ଆମ ବାସୁଆର ଖବର ଦେଇ ତମରି ନଡ଼ିଆ ନେଇଯାଉ।'

କେତେ ଦିନ ପରେ ଟିମା ଫକୀର ଆସିଲା। ବୋଉକୁ କହିଲା - "ବାସୁଆଟା ଭଲରେ ଥିଲା। କୁଆଡ଼େ ଚାଲିଗଲା କେଜାଣି। ଦି'ଦିନ ହେଲା, ମୁଁ ତାକୁ ଖୋଜି ଖୋଜି ପାଉ ନାହିଁ।"

ମୋ ବୋଉକୁ ଆଉ କିଏ ସମ୍ଭାଳେ। କନ୍ଦାକଟା ଆରମ୍ଭ କରିଦେଲା। ତା'କାନ୍ଦ ବୋବାଳି ଶୁଣି ଗାଁ'ର ଭେଣ୍ଡିଆ ଟୋକାମାନେ ଆସି ଟିମା ଫକୀରକୁ ବାନ୍ଧି ପକେଇଲେ। ମନଇଚ୍ଛା ଯିଏ ଯେତେ ଗାଳି ଦେଲେ। ବୁଢ଼ା ପିଠିରେ ଦି'ଚାରିଟା ବିଧା ବି ବସିଗଲା। କିଏ କେତେ କଥା କହିଲେ।

ବୋଉ ଅବାକ୍ ହେଇ ଠିଆ ହେଇଥାଏ। ବାପା ହାଟରୁ ଫେରି ସବୁକଥା ଶୁଣିଲେ। ଗାଆଁ ଲୋକଙ୍କ ଉପରେ ବିରକ୍ତ ହେଇ ଟିମା ଫକୀରକୁ ବନ୍ଧନମୁକ୍ତ କଲେ। ବୋଉ ତା'ଗୋଡ଼ ଧରି କ୍ଷମା ମାଗିଲା। ତାକୁ ଭଲ କରି ଖାଇବା ପିଇବାକୁ ଦେଇ ବାବାଙ୍କ ନାଆଁରେ ଥିବା ମାନସିକ ନଡ଼ିଆ ଦେଇ ବିଦା କଲା।

ଟିମା ଫକୀର ଗାଆଁ ଟୋକାଙ୍କ କଥାକୁ ଧରିଲା ନାହିଁ। ଗଲାବେଳେ କହି ଗଲା - "ଏମିତି ପରିସ୍ଥିତିରେ ମୁଁ ବି ଏଇୟା କରି ଥା'ନ୍ତି। କ'ଣ କରିବି ? ଏ'ସବୁ ମୋର ଗ୍ରହ ଦୋଷ। ଗାଆଁ ଯାକର ଭିକ ଖାଇ ମୁଁ ବଞ୍ଚିଛି। ସେମାନେ ମୋର ଅନ୍ନଦାତା। ତାଙ୍କର ମାରିବାର ଅଧିକାର ଅଛି। ତମେ କେହି ଦୁଃଖ କରନା ମା'। ମୁଁ ଆଜି ଯାଉଛି, ଯେମିତି ହେଲେ ବାସୁଆକୁ ଖୋଜି ବାହାର କରିବି।"

ସେଇଦିନୁ ଟିମା ଫକୀର ଯାଇଛି ଯେ ଯାଇଛି। ତା'ର ଆଉ ଦେଖା ନାହିଁ। ପୁଣି ବୋଉ ବ୍ୟସ୍ତ ହେଲା। ବାବାଙ୍କ ନାଆଁରେ ନଡ଼ିଆ ମାନସିକ କରି ରଖିଲା। କେତେ ବିକଳ ହେଇ ପୀରବାବାଙ୍କୁ ଡାକିଲା। ଏଥର କିନ୍ତୁ ବାବା ମୋ ବୋଉର ଡାକ ମୋଟେ ଶୁଣିଲେ ନାହିଁ।

କେତେ ରକମର କଥା ଉଠିଲା। ଗାଆଁ ଟୋକା କହିଲେ - "ଟିମା ଫକୀର ଆମ ଗାଆଁ ଟୋକାଙ୍କ ଉପରେ ରାଗିଛି। ସେ କିଛି ଗୋଟାଏ ଫନ୍ଦି ଫିକର କରୁଥିବ। ବାସୁଆକୁ ଆଉ ସେ ପାଇବ କୋଉଠୁ ? ସେଇଥିପାଇଁ ତା'ର ମୁହଁ ଦେଖେଇବାକୁ ସାହସ ନାହିଁ। ଏଥର ଆସୁ ବୁଢ଼ା, ତା'ର ଫକୀର ପଣିଆଁ ଛଡ଼େଇବୁ।"

ବାସୁଆ ବାଛୁରି ଆଉ ଟିମା ଫକୀର କଥା ଭାବି ଭାବି ବୋଉର ଦେହ ଖରାପ ହେଇଗଲା। ଶେଷରେ ବାଧ୍ୟ ହେଇ ବାପା ପୀରବାବାଙ୍କ ପାଖକୁ ଗଲେ।

ଟିମା ଫକୀର କୋଉଠି ରହେ ? ପଚାରିବାରୁ ରଉଜା ପାଖରେ ବସିଥିବା ଜଣେ ଲୋକ କହିଲା - "ଟିମା ଫକୀର ତ ମାସେ ହେଲା ମରିଗଲାଣି। ବିଚରା କୋଉଠୁ ଗୋଟାଏ ବାଛୁରି ଆଣିଥିଲା ଯେ, ଖୁବ୍ ଯତ୍ନରେ ରଖିଥିଲା। ବାଛୁରିଟା ବଢ଼ି ବଢ଼ି ଷଣ୍ଢ ହେଇଗଲା। ଏଣେ ତେଣେ ବୁଲିଲା। ଦୁଇ ଚାରି ଦିନ କୁଆଡ଼େ ପଳେଇଥିଲା। ବୁଢ଼ା ତାକୁ ବହୁତ ଖୋଜିଲା।

- ଦିନେ ବୁଢ଼ା ଭିକ ମାଗିବାକୁ ନଯାଇ ଆଖପାଖ ସବୁ ଗାଆଁରେ ତାକୁ ଖୋଜିଲା। ବାସୁଆ ବାସୁଆ ଡାକି ବହୁତ ବୁଲିଲା।

- ଦିନେ ତାକୁ ପାଇଲା। ଗାଳି ମନ୍ଦ କରି ସାରି ବୁଢ଼ା ତା'ଗାମୁଛାରେ ଷଣ୍ଢ ବେକକୁ ବାନ୍ଧି ଅଟକେଇ ଦେଲା। ସିଏ ତ ପୂରା ମାତିଥିଲା। ମାଲିକ ଟିମା ଫକୀରକୁ ଆଉ ଚିହ୍ନି ପାରିଲା ନାହିଁ। ପାଗଳା ହେଲା ପରି ବୁଢ଼ାକୁ ଟେକି କଚାଡ଼ି ଦେଲା। ତା'ପରେ ତା'ର ଗୋଜିଆ ଶିଙ୍ଗରେ ଚିରିଫାଡ଼ି ପକେଇଲା। ବାପରେ ବାପା ଷଣ୍ଢର କି'ରାଗ! ବୁଢ଼ା ବିକଳ ହେଇ ଗଡୁଥାଏ। ଷଣ୍ଢ ତାକୁ ମାରି ମାରି, ମାରି ପକେଇଲା। ସେ ପୀରବାବାଙ୍କ ଷଣ୍ଢ ହେଇଥିବାରୁ ତାକୁ କେହି ମାରଧର କରନ୍ତି ନାହିଁ। ଏବେ ସେ ଷଣ୍ଢକୁ ଆମ ସମସ୍ତଙ୍କର ଡର।"

ବାପାଙ୍କ ଆଖିରୁ ଦୁଇ ଟୋପା ଲୁହ ଗଡ଼ି ପଡ଼ିଲା ।

ଟିମା ଫକୀରଙ୍କ ଉଦ୍ଦେଶ୍ୟରେ ସେ ଦୁଇ ହାତ ଯୋଡ଼ି ପୀରବାବାଙ୍କୁ ପ୍ରାର୍ଥନା କଲେ - "ବାବା ! ଆମର ଦୋଷ କ୍ଷମା କରିଦିଅ। ଟିମା ଫକୀରଙ୍କୁ ସ୍ୱର୍ଗରେ ଶାନ୍ତିରେ ରଖ।"

୦୦୦



# ମହନାର ବୁଟା

ମହନାର ବହି ଦୋକାନ ଆଗରେ ଆଜି ଅସମ୍ଭବ ଭିଡ଼। କଥା କ'ଣ କି, ବୁଝିଲା ବେଳକୁ ଜଣାପଡ଼ିଲା ; ବହି ଦୋକାନୀ ମହନା ବିନା କାରଣରେ ମ୍ୟୁନିସିପାଲିଟିର ବଡ଼ବାବୁଙ୍କୁ କସିକି ଚାପଡ଼େ ଦେଇଛି। ବଡ଼ବାବୁ କି ଛାଡ଼ିବା ଲୋକ ? ସେ ମହନାକୁ ଦୋକାନ ଉପରୁ ଟାଣି ଆଣି ଭଲକି ବିଧା ଗୋଇଠା ମାରିଛନ୍ତି। ବିଚରା ମହନା ତଳେ ପଡ଼ି ଗାଁ ଗାଁ ହଉଛି। ପାଖ ଦୋକାନୀମାନେ ବଡ଼ବାବୁଙ୍କୁ ଘେରି ପଡ଼ିଛନ୍ତି। ଗଣ୍ଡଗୋଳ ଦେଖିବାକୁ ରାସ୍ତାରେ ଯାଉଥିବା ଲୋକମାନେ ଜମା ହୋଇ ପଡ଼ିଛନ୍ତି। ସାଇକେଲ, ସ୍କୁଟର ସବୁ ରାସ୍ତା ଉପରେ ଏଣେ ତେଣେ ହୋଇ ଡେରା ହୋଇଛି।

ବଡ଼ବାବୁ ବଡ଼ପାଟିରେ କହୁଛନ୍ତି - "ଦେଖ ହୋ ! ମତେ ଏ'ବଦମାସଟା ଆଗ ଚାପଡ଼େ ପକେଇଲା। ଶଳା ! ପାଟିରୁ କଥା ବାହାରୁ ନଥିଲା। ଖାଇବାକୁ ପାଉ ନଥିଲା। ମୁଁ ତାକୁ ବୁଦ୍ଧି ବତେଇଲି। ବସ୍‌ଷ୍ଟାଣ୍ଡ ପାଖ ମ୍ୟୁନିସିପାଲିଟି ଜାଗାରେ ଗୁମୁଟି ପକେଇବା କ'ଣ ସହଜ କଥା ? ମୋ ସାହସରେ ସେ ଗୁମୁଟି ପକେଇଲା। ଶେଷରେ ଦେଖ, କଥା  ନାହିଁ ବାର୍ତ୍ତା ନାହିଁ। ହଠାତ ମୋ ଉପରକୁ ଝାମ୍ପି ପଡ଼ି ପକେଇଲା ଚାପଡ଼େ।

- ମୁଁ ମ୍ୟୁନିସିପାଲିଟିର ବଡ଼ବାବୁ। ସେ ମତେ କ'ଣ ଭାବିଲାକି ? ଶଳାକୁ ଆମେ ଭାବୁଥିଲୁ ହୁଣ୍ଡାଟା। ନିରୀହ ପିଲାଟା। ଇଏ ପକ୍କା ପାଜିଟା ହୋ। ମୋ ଉପରକୁ ପୁଣି ହାତ ଉଠେଇ ଦେଲା। ଆଜି ତାକୁ ମାରି ପକେଇଥା'ନ୍ତି। ଏମାନେ ଖାଲି ଅଟକେଇ ଦେଲେ। ନହେଲେ ଶଳାର ତଣ୍ଟି.ଚିପି ରକ୍ତ ପିଇ ଯାଇଥା'ନ୍ତି।"

ବଡ଼ବାବୁଙ୍କ ରୁଦ୍ର ରୂପ ଦେଖି ଦେଖଣାହାରୀମାନେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ। ଏଣେ କେତେଜଣ ଦୋକାନୀ ଭାଇ ମହନାକୁ ଉଠେଇ ନେଇ ବେଞ୍ଚରେ ବସେଇ ପାଣି ଛାଟୁ ଥିଲେ।

ଜଣେ ପାଖ ଦୋକାନୀ ସାକ୍ଷୀ ଦେଇ କହୁଥିଲେ - "ମୁଁ ନିଜେ ଦେଖିଛି, ମହନା ବିନା କାରଣରେ ବଡ଼ବାବୁଙ୍କୁ ଚାପଡ଼େ ପକେଇଲା।"

ଯେତେ ସତକଥା କହିଲେ ବି ଦେଖଣାହାରୀମାନେ ବିଶ୍ୱାସ କରିପାରୁ

ନଥିଲେ ଯେ. ମହନା ଭଳି ନିରୀହ ମଣିଷଟା ହାତ ଉଠେଇ କାହାକୁ ମାରିଥିବ। ଆମ ଭିତରୁ ଅନେକ ମହନାର ଗ୍ରାହକ। ତା'ଠୁ କିଏ ପତ୍ରିକା ଖଣ୍ଡିଏ କିଣନ୍ତୁ ବା ନ'କିଣନ୍ତୁ, ଦୋକାନ ଆଗରେ ଠିଆ ହେଇ ନିଶ୍ଚୟ କିଛି ସମୟ ବହିପତ୍ର ଖେଳେଇ ଥିବେ।

ମହନା କୌଣସି ଗ୍ରାହକଙ୍କ ଉପରେ ମୋଟେ ବିରକ୍ତ ହୁଏ ନାହିଁ। କେବେ କେମିତି କଲେଜ ଟୋକାମାନେ ସିନେମା ପତ୍ରିକା ଖଣ୍ଡେ ବାକିରେ ନେଇ ଚମ୍ପଟ ମାରନ୍ତି ଯେ, ଆଉ ଦେଖା ଦିଅନ୍ତି ନାହିଁ। ଆଉ ଜଣେ ଜଣେ ନିଲଠା ଗ୍ରାହକ ଘଣ୍ଟା ଘଣ୍ଟା ଧରି ସାପ୍ତାହିକୀ ପତ୍ରିକାକୁ ଖେଳେଇ ପଢୁଥିବେ ଯେ ପଢୁଥିବେ। ପଢ଼ା ଶେଷରେ ଅନ୍ୟମନସ୍କ ହେବାର ଅଭିନୟ କରି ଥୋଇ ଦେଖି ଚାଲିଯିବେ।

ଆଉ ଜଣେ ଜଣେ ଶିକ୍ଷିତ ବଡ଼ ଚାକିରିଆ ବାବୁ ଆସନ୍ତି। ମେମ୍ ସାହେବଙ୍କ ପାଇଁ ଦାମୀ ଇଂରାଜୀ କି ହିନ୍ଦୀ ପତ୍ରିକା ଖଣ୍ଡେ କିଣୁ କିଣୁ ତା'ସାଙ୍ଗରେ ନିଜ ପାଇଁ ଖଣ୍ଡେ ଅଧେ ପତ୍ରିକା ଲୁଚେଇ ନେଇଯା'ନ୍ତି। ମହନା ଏତେ ବଡ଼ ବଡ଼ ବାବୁମାନଙ୍କୁ ସାହସ କରି କିଛି କହି ପାରେନା।

ଯାହାକୁ ସେ ନିଜର ଭାବେ, ପରେ ତାଙ୍କୁ ମନଖୋଲି ତା'ଦୁଃଖ କଥା କହିପକାଏ। 'କାଳେ କିଏ ମନଦୁଃଖ କରିବ। ବଡ଼ବାବୁମାନଙ୍କୁ କାଳେ ଅପମାନ ହେଇଯିବ। ଦି'ଚାରି ଟଙ୍କା ଗଲେ ଯାଉ। ବଡ଼ବାବୁଙ୍କ ସମ୍ମାନଟା ସବୁଦିନ ପାଇଁ ଥାଉ।'

ଆଜି ସେଇ ମହନା ପୁଣି ବଡ଼ବାବୁଙ୍କୁ ଚାପଡ଼େ କସି ଦେଇଛି। ଏ'କଥାକୁ ଆମ ଭିତରୁ କେହି ବିଶ୍ୱାସ କରିପାରୁ ନଥିଲେ। ତେବେ ଏ'ଭଳି ଦୁର୍ଘଟଣା ପଛରେ ନିଶ୍ଚୟ କିଛି ଗୋଟାଏ ରହସ୍ୟ ଲୁଚି ରହିଥିବ।

ମଝିରେ ମଝିରେ ମହନାର ଚେତା ବୁଡ଼ି ଯାଉଥିଲା। ତାକୁ ଦୋକାନୀମାନେ ସାନ୍ତ୍ୱନା କରୁଥିଲେ। ମହନାର ଅବସ୍ଥା ଦେଖି ଦୋକାନୀମାନଙ୍କ ମଧ୍ୟରେ ଚାପା ଉତ୍ତେଜନା ମଧ୍ୟ ବୃଦ୍ଧି ପାଉଥିଲା। ଯୋଗକୁ ମ୍ୟୁନିସିପାଲିଟିର ଆଉ କେତେଜଣ ଷ୍ଟାଫ୍ ସେଇଠି ଆସି ପହଞ୍ଚିଗଲେ। ବଡ଼ବାବୁଙ୍କୁ ବୁଝେଇବା ଆଳରେ ତାଙ୍କୁ ସେଇଠୁ ନେଇ ଚାଲିଗଲେ। ନହେଲେ, କଥାଟା ଅନ୍ୟ ଆଡ଼କୁ ଚାଲି ଯାଇଥା'ନ୍ତା।

କିଛି ସମୟ ପରେ ମ୍ୟୁନିସିପାଲିଟିର ଅଫିସର ଦି'ଜଣ ଆସି ପରସ୍ପର ମଧ୍ୟରେ ବୁଝାମଣା କରି ଦେଲେ। ମହନାର ସମସ୍ତ ଚିକିତ୍ସା ଖର୍ଚ୍ଚ ସେମାନେ ବହନ କରିବାକୁ ପ୍ରତିଶ୍ରୁତି ଦେଲେ। ନଗଦ ପାଞ୍ଚ ଶହ ଟଙ୍କା ସେ ବାବଦକୁ ଅଗ୍ରୀମ ମଧ୍ୟ ମିଳିଗଲା। ମହନା ସେ ଦିନ ଘରେ ଯାଇ ବିଶ୍ରାମ ନେଲା।

ତା'ପରଦିନ ମହନାର ଦୋକାନ ଠିକ୍ ସମୟରେ ଖୋଲିଲା। ପ୍ରକୃତ ଘଟଣା କ'ଣ ଜାଣିବାକୁ ଆମର ଇଚ୍ଛା ପ୍ରବଳ ହେଲା। ମହନାକୁ ଗତକାଲିର ଘଟଣା ପଚାରିବାରୁ ସେ କହି ଚାଲିଲେ, - "ଆଜ୍ଞା ! ଗତକାଲି ମୋ ମୁଣ୍ଡଟା ପୂରା ବିଗିଡ଼ି ଯାଇଥିଲା। ନ'ହେଲେ, ଦେବତା ସମାନ ବଡ଼ବାବୁଙ୍କୁ ମୁଁ ହାତ ଉଠେଇ ପାରିଥା'ନ୍ତି ?

- ବୁଝିଲେ ଆଜ୍ଞା ! ନିଜ ହାତରେ ଯେଉଁ ଜୀବଟାକୁ ବଢ଼େଇଥିଲି। ଖୋଇପେଇ ନିଜ ପୁଅ ପରି ପାଳିଥିଲି। ତା'ମୃତ୍ୟୁ ଖବରଟାକୁ ଶୁଣି ମୁଁ କେମିତି

ଧୈର୍ଯ୍ୟ ଧରି ରହିଥା'ନ୍ତି, କହିଲେ। ବଡ଼ବାବୁଙ୍କ ଜାଗାରେ ମୋ ବାପା ଥିଲେ ବି, ସେ ଚାପଡ଼ଟା ତା'ଗାଲରେ ନିଶ୍ଚୟ ବସି ଯାଇଥା'ନ୍ତା।

କଥାଟାକୁ ବଡ଼ବାବୁ ଟିକିଏ ବୁଲେଇ ବଙ୍କେଇ କହିଥିଲେ, ହେଇ ନଥା'ନ୍ତା ? ଏକାଥରେ ଆସି ମତେ କହି ପକେଇଲେ, 'ବୁଟାକୁ ବିଷ ଇଂଜେକ୍ସନ୍ ଦେଇ ମାରି ଦେଲୁ।' ବଡ଼ବାବୁଙ୍କ ତୁଣ୍ଡରୁ ବୁଟା ମରାଯିବା କଥାଟା ଶୁଣି ପକେଇ ମୁଁ ନିଜକୁ ସମ୍ଭାଳି ପାରିଲି ନାହିଁ। ବୁଟାର ମରିବା ଖବର ଦେଇଥିବା ବଡ଼ବାବୁଙ୍କୁ ଚାପଡ଼େ କସି ଦେଇ ମୁଁ ମୋର ସବୁ ରାଗକୁ ଶାନ୍ତ କରିଦେଲି।"

ମହନା ଟିକେ ନିଃଶ୍ୱାସ ମାରି ପୁଣି କହି ଚାଲିଲା, "ବୁଟାଟା ଖାଲି ପୋଷା କୁକୁର ନଥିଲା ଆଜ୍ଞା ! ସେ ମୋର ପୁଅ-ଝିଅ ସବୁ କିଛି ଥିଲା। ତାକୁ ଆଗ ଖାଇବାକୁ ଦିଏ। ମୁଁ ଯାହା ଖାଏ, ସିଏ ବି ସେଇୟା ଖାଏ। ମୁଁ ତ ଦିହକରେ ଦିନେ ବି ସାବୁନ କି ପାଉଡ଼ର ମାଖି ନାହିଁ। କିନ୍ତୁ ବୁଟା ପାଇଁ ମୋ ଘରକୁ ସାବୁନ ପାଉଡ଼ର ଆଣେ।

- ସେ କୁକୁରଟା ହେଲେ କ'ଣ ହବ, ପୂରା ଗୋଟାଏ ମଣିଷ ପରି ମୋ କଥାକୁ ବୁଝେ। ମଣିଷକୁ ପଛେ ଅବିଶ୍ୱାସ କରି ହବ, ବୁଟାକୁ କେବେ ନୁହଁ। ସେ ଆଜ୍ଞା କେଉଁ ଜନ୍ମରେ ମଣିଷଟାଏ ଥିଲା। ଅଭିଶାପ ପାଇ ଜାଣିକି କୁକୁର ଜନ୍ମ ପାଇଥିଲା।

- ଦି'ବର୍ଷ ତଳେ ବଡ଼ବାବୁ ମୋତେ ଏଇ ଜାଗା ଖଣ୍ଡିକ ଦେଖେଇ ଦେଇଥିଲେ। ଗୁମୁଟି ଖଣ୍ଡେ ପକେଇ ନୂଆ କରି ଦୋକାନ ଖୋଲିଲି। ସେଦିନ ପ୍ରବଳ ଶୀତ ପଡ଼ିଥାଏ। ସଂଜ ବେଳକୁ ହେମାଳ ପବନ ବହିଲା। ଶୀତରେ ମୋ ହାଡ଼ ଥରିଗଲା। ଲୋକବାକ ବି ଦେଖା ନଥିଲେ। ସଂଜବେଳୁ ଦୋକାନ ବନ୍ଦ କରି ଦେଇ ଘରକୁ ଚାଲିଲି।

- ଭଙ୍ଗା ଚାଳଘର ଖଣ୍ଡେ ଭଡ଼ାରେ ନେଇଥାଏ। ଦୁଆରେ ପହଞ୍ଚି ଦେଖିଲି,, ଧୋବ ଫରଫର କୁକୁର ଛୁଆଟା ଦୁଆର କବାଟକୁ ଲାଗି ଶୋଇଛି। ତାକୁ ଉଠେଇବାକୁ ଗଲା ବେଳକୁ ସିଏ ମୋତେ ଚାଟିଚୁଟି ପକେଇଲା। କୁଁ-କୁଁ ହେଇ ଆଶ୍ରା ମାଗିଲା।

- ମୁଁ ଦେଖିଲି, ଟିକି ଛୁଆଟା ବାହାର ଶୀତରେ ଥରି ଥରି ରାତିରେ ମରିଯିବ। ମୋ ମନରେ ଟିକେ ଦୟା ଆସିଲା। ଘର ଭିତରେ ଛିଣ୍ଡା ଅଖା ଖଣ୍ଡେ ପକେଇ ଦେଲି। ଛୁଆଟା ବଡ଼ ଆରାମରେ ଶୋଇଲା।

- ସକାଳର ଭାତ ମୁଠେ ବଳିଥିଲା। ତାକୁ ଖାଇବାକୁ ଦେଲି। ବିଚରା କେବେଠୁ ଉପାସିଆ ଥିଲା କେଜାଣି, ସବୁ ତକ ଖାଇ ଦେଲା। ମୋତେ ବହୁତ ଖୁସି ଲାଗିଲା।

- ତା'ପର ଦିନ ସକାଳେ ଉଠି କୁକୁର ଛୁଆକୁ ଘରୁ ବାହାର କରିଦେଲି। କିନ୍ତୁ ଛୁଆଟା ଗୋଟାଏ ରାତିର ମମତାକୁ ଭୁଲି ପାରିଲା ନାହିଁ। ସେ ବୁଝିଗଲା, ଏ'ଘରଟା ହଉଛି - ତା'ର। ମୁଁ ହଉଛି - ତା'ର ବାପା କି ମାଆ।

- ପାଖ ପଡ଼ିଶାର ଲୋକେ କୁକୁର ଛୁଆଟାକୁ ଦେଖି କୁହା କୁହି ହେଲେ, 'ଏ'ଛୁଆଟା ବଡ଼ ହେଲେ ବଢ଼ିଆ କୁକୁର ହେବ। ଆଲ୍‌ସିସିଆନ୍ କୁକୁରକୁ ବି ବଳିଯିବ। ବୋଧହୁଏ - ହାଇବ୍ରିଡ୍ ଛୁଆଟା କେମିତି ଭୁଲ୍‌ରେ ଚାଲି ଆସିଛି।

ବଜାରରେ ବିକି ଦେଲେ ପରା ପାଞ୍ଚ ଶହ କି ହଜାରେ ଟଙ୍କା ହବ। ଭାଗ୍ୟରେ ଥିଲେ, ଏମିତିକା କୁକୁର ଛୁଆ ମିଳେ।'

- ଲୋକଙ୍କ କଥା ଶୁଣି ମୋ ମନ କୁଣ୍ଢେ ମୋଟ ହେଇ ଯାଇଥିଲା। ମୁଁ ଠିକ୍ କରିନେଲି, ଛୁଆଟା କ'ଣ ମୁଠାଏ ଖାଇବ। ମୁଁ ତ ଏକୁଟିଆ ରହୁଛି। ଛୁଆଟା ମୋର ସାଥୀରେ ଥିଲେ, କେତେ ସାହସ। ବଢ଼ିଗଲେ ଘର ଜଗିବ।

- ସେହି ଦିନଠାରୁ ବୁଟା ସହିତ ମୋର ପରିବାର ଗଢ଼ିଲି। ସେ ଘରେ ରହେ। ମୁଁ ଦୋକାନରୁ ଫେରିବା ପର୍ଯ୍ୟନ୍ତ ମୋତେ ଅପେକ୍ଷା କରି ରହିଥାଏ। ଯାହା ରୋଷେଇ କରେ, ଦି'ଜଣ ଖାଉଁ। ମଝିରେ ମଝିରେ ବୁଟା ପାଇଁ ଛେଳି ଗୋଡ଼, ପୁଣି ଟିକିଆ କିମ୍ବା ହାଡ଼ ମିଶା ମାଂସ ଟିକେ ଆଣେ। ମାଂସ ଅପେକ୍ଷା ସେ ହାଡ଼ ରେକଟିବାକୁ ବେଶି ଭଲ ପାଏ।

- ଦି'ମାସର ଛୁଆ ବୁଟାକୁ ଯିଏ ଦେଖିଲା, ସିଏ ନଜର ପକେଇଲା। ତା'ର ଲମ୍ବା ଲମ୍ବା କାନ, ଭାଲୁ ପରି ଲୋମ ଆଉ ଗୁଲୁଗୁଲିଆ ହସିଲା ପରି ମୁହଁକୁ ଦେଖି ପକେଇଲେ, ମୋ ପେଟ ପୂରିଯାଏ। ଦୋକାନ ବନ୍ଦ କରି ଗଲା ବେଳକୁ ସେ ମୋ ବାଟକୁ ଚାହିଁ ବସିଥାଏ। ମୋତେ ଦେଖି ପକେଇଲେ, କୁଁ-କୁଁ ହେଇ ଦିନ ଯାକର ଦୁଃଖ କହି ପକାଏ। ଗୋଡ଼ ହାତକୁ ଚାଟି ପକେଇ କୃତଜ୍ଞତା ଜଣାଏ। ତା'ର ଗୋଡ଼ ଦି'ଟା ଟେକି ମୋ ଉପରେ ଡେରି ହେଇ ପଡ଼େ।

- ମୁଁ ତାକୁ ଟିକେ ଆଉଁସି ପକେଇ କେତେ କଥା କହି ପକାଏ। ମୋତେ ଲାଗେ, ବୁଟା ମୋର ସବୁ କଥାକୁ ବୁଝି ପାରୁଛି।

- ଥରେ ଜଣେ ପଶୁ ଡାକ୍ତରବାବୁ ବୁଟାକୁ ଦେଖି ମୋତେ କହିଲେ, 'କୁକୁର ରଖିବାକୁ ହେଲେ, ତା'ର ଉପଯୁକ୍ତ ଯତ୍ନ ନେବାକୁ ହେବ। ମଝିରେ ମଝିରେ ତାକୁ କୃମି, ଆଣ୍ଟିରାବିସ୍ ଔଷଧ, ଇଂଜେକ୍‌ସନ୍ ଦେବାକୁ ହେବ।'

- କୁକୁରକୁ କେମିତି ସାବୁନ୍ ଆଉ ପାଉଡ଼ର ଲଗେଇ ଦେବାକୁ ହୁଏ, ସେ କଥା ମଧ୍ୟ ଡାକ୍ତରବାବୁ ବୁଝେଇ ଦେଇ ଥିଲେ। ସେହିଦିନ ବୁଟା ପାଇଁ ତିନି ଶହ ଟଙ୍କା ଖର୍ଚ୍ଚ ହେଇଗଲା।

- ସତରେ ଆଜ୍ଞା! ମୋ ନିଜ ପାଇଁ ମୁଁ କେବେ ଏକାଥରେ ତିନି ଶହ ଟଙ୍କା ଖର୍ଚ୍ଚ କରି ନଥିଲି। ସେ ଦିନ ଏତେ ଟଙ୍କା ଖର୍ଚ୍ଚ କରି ଦେଲି ସିନା, ମନରେ ଟିକିଏ ବି ଦୁଃଖ ହେଲା ନାହିଁ।

- ମୁଁ ତ ଟଙ୍କା ରୋଜଗାର କରୁଛି। ଯାହାକୁ ଏତେ ଭଲ ପାଉଛି, ତା'ପାଇଁ ଟଙ୍କା ଖର୍ଚ୍ଚ କରିବି ନାହିଁ ତ ଟଙ୍କା ରହି ଲାଭ କ'ଣ? ବୁଟାର ଦେହ ଭଲ ରହିଲେ ତ ମୋ ମନଟା ଭଲ ରହିବ।

- ଚାରି ପାଞ୍ଚ ମାସର ହେଲା ବେଳକୁ ବୁଟାର ରୂପ ରଙ୍ଗ ସବୁ ବଦଳିଗଲା। ତା'ର ମୋଟା ଗଳାର ଶବ୍ଦ 'ଭାଉ-ଭାଉ' ଶୁଣିଲେ, ବାହାର କୁକୁରଙ୍କ କଥା ଛାଡ଼, ଦାଣ୍ଡରେ ଯାଉଥିବା ହାତୀ ବି ଚମକିଲା। ତା'ର ଗୋଜିଆ ଗୋଜିଆ ଦାନ୍ତ, ମୁନିଆଁ ନଖକୁ ଦେଖି ରାସ୍ତାରେ ଯାଉଥିବା ଲୋକ ବି ଡରିଲେ।

- ଥରେ ମୋ ଘର ମାଲିକ ଆସି ମତେ କହିଲା, 'ହଇରେ ମହନା! ତୁ ତ ଭଙ୍ଗା ଚାଳ ଘରଟାରେ ପନ୍ଦର ଟଙ୍କା ଭଡ଼ାରେ ରହୁଛୁ। ସଂପତ୍ତି ବୋଲି କହିଲେ,

ସିଲିଭର ବାସନ କେଇ ଖଣ୍ଡ। ଦଉଡ଼ିଆ ଖଟ ଖଣ୍ଡେ। ତୋର ଛିଣ୍ଡା କନ୍ଥା, ମାଟି ହାଣ୍ଡି ଆଉ ଭଙ୍ଗା ପ୍ଲାଷ୍ଟିକ୍ ବାଲ୍‌ତିକୁ କୋଉ ଚୋରଟା ଆସି ନେଇ ଯାଉଛି ଯେ, ବାଘ ଭଳିଆ କୁକୁରଟାକୁ ପୋଷିକି ରଖିଛୁ ?

- ଅବଶ୍ୟ ତୋ କୁକରଟା ମଣିଷ କଥା ବୁଝୁଛି। ତାକୁ ତୁ ବିକି ଦଉନୁ। ଦି'ତିନି ହଜାର ଟଙ୍କାରେ ଖୁସିରେ ଯିବ। ତୁ ଯଦି କହିବୁ, ତେବେ ମୁଁ ଗ୍ରାହକ ଠିକ୍‌କରେଇ ଦେବି।

ଘର ମାଲିକର ଏ'କଥାଟା ମତେ ସେଦିନ ଭାରି ଖରାପ ଲାଗିଲା। ମୁଁ ତାଙ୍କୁ କହିଲି - 'ଦେଖ ବାବୁ! ଏମିତିକା କଥା ଆଉ ଦିନେ କାହାକୁ କହିବ ନାହିଁ। ବୁଟା ଖାଲି ମୋର ଘର ଜଗା କୁକୁର ନୁହଁ। ସେ ହଉଛି - ମୋ ପୋଷା ପୁଅ। ମୋ ସୁଖ ଦୁଃଖର ସାଥୀ। ମୋର ପରିବାର, ଆଉ ମୋ ଜୀବନର ଅଧା।

ତିନି ହଜାର ଟଙ୍କାରେ କୁକରଟା କିଣା ହେଇ ଯାଇପାରେ ସତ, କିନ୍ତୁ ମୋ ଭଲ ପାଇବାର ମୂଲ୍ୟ କ'ଣ କିଏ ଦେଇ ପାରିବ ?'

ମୋ କଥା ଶୁଣି ଘର ମାଲିକ ଜୋକ ମୁହଁରେ ଲୁଣ ଦେବା ପରି ଚୁପ୍ ରହିଗଲା। ତା'ପରଦିନ ବୁଟା ନାଆଁରେ କମ୍ପ୍ଲେନ୍ ଶୁଣିଲି। ସେ କୁଆଡ଼େ ରାସ୍ତାରେ ଯାଉଥିବା ଲୋକମାନଙ୍କୁ କାମୁଡ଼ି ଗୋଡ଼ଉଛି। ମୁଁ ବୁଟାକୁ ପାଖକୁ ଆଉଜେଇ ଆଣି କହିଲି, 'ଦେଖ ବାପା! କାହାରିକୁ କେବେ କାମୁଡ଼ା କାମୁଡ଼ି କରିବୁ ନାହିଁ। ଖାଲି ଟିକେ ଭୁକି ଦେଇ ଡରେଇ ଦେଲେ ଗଲା।'

ପୁଣି ଦିନେ ଦୁଇ ଦିନ ଯାଇଛି କି ନାହିଁ, କିଏ ଜଣେ ଆସି ଖବର ଦେଲା, ଘର ମାଲିକ ଝିଅକୁ ବୁଟା କାମୁଡ଼ି ଦେଇଛି। ମୁଁ ସଂଗେ ସଂଗେ ଦୋକାନ ବନ୍ଦ କରି ଦୌଡ଼ିଲି। ଦେଖିଲି, ସତରେ ବୁଟା ତାକୁ କାମୁଡ଼ିଛି। ଛୁଆଟାକୁ କାହିଁକି ସେ କାମୁଡ଼ିଲା ? କିଏ ତାକୁ ମାରଧର କରିଛି କି ନାହିଁ, ସେ କଥା ତ ବୁଟା କହି ପାରିଲା ନାହିଁ। ତେଣୁ ମୁଁ ନିଜ ଦୋଷ ସ୍ୱୀକାର କରି ଘର ମାଲିକ ଝିଅକୁ ଡାକ୍ତରଖାନା ନେଇ ଚାରି ଶହ ଟଙ୍କାର ଇଂଜେକ୍‌ସନ୍ ଦେଲି। ବୁଟାକୁ ଘର ଭିତରେ ବାନ୍ଧି ରଖିବାକୁ ମୋଟା ଚେନ୍‌ଟିଏ କିଣିଲି।

ଚେନ୍‌ରେ ବନ୍ଧା ରହିବା ଅଭ୍ୟାସ ହେବା ପର୍ଯ୍ୟନ୍ତ ବୁଟା ବହୁତ କାନ୍ଦିଲା। ତା'ର କାନ୍ଦ ଦେଖି ମୋତେ ଭାରି ବାଧେ ଆଜ୍ଞା। କିନ୍ତୁ କ'ଣ କରିବି ? ତା'ନାଆଁରେ ତ ବଦନାମୀ ବଢ଼ି ବଢ଼ି ଚାଲିଛି। କିଏ କେତେବେଳେ ତାକୁ ପିଟି ବାଡ଼େଇ ମାରିଦବ, କିଏ କହି ପାରିବ ?

ତା'ପରଦିନ ପୁଣି ଗୋଟାଏ ବଡ଼ ଦୁର୍ଘଟଣା ଘଟିଗଲା। ଖବର ପାଇଲି, ବୁଟା ଚେନ୍ ଛିଡ଼େଇ ପୋଲିସବାବୁଙ୍କ ଗାଈକୁ କାମୁଡ଼ି ପକେଇଛି। ଘରକୁ ଫେରି ଶୁଣିଲି, ଶିଙ୍ଗ ନଥିବା ଡେଙ୍ଗୀ କାଳି ଗାଈଟା ମୁହଁ ବଢ଼େଇ ଘର ଚାଳକୁ ଓଲାରି ଛଣ ଖାଇ ଯାଉଥିଲା। ବୁଟା ତାକୁ ଦେଖି ରାଗରେ ଭୁକି ଭୁକି ଶେଷରେ ଚେନ୍ ଛିଡ଼େଇ କାମୁଡ଼ି ପକେଇଛି।

ମୁଁ ତ ଗରିବ ଅସହାୟ ଲୋକଟାଏ, ତେଣେ ପୋଲିସବାବୁଙ୍କ ଭଳି ଜବରଦସ୍ତ ଚାଳ ଟାଣି ଖାଉଥିବା ଗାଈର କ'ଣ ଦୋଷ ଧରାଯିବ ? ମୋ ବୁଟାର ଦୋଷ ହିଁ ଧରା ହେଲା। ପୋଲିସବାବୁଙ୍କ ଭୟରେ ସମସ୍ତେ କହିଲେ, 'ମହନା କୁକୁରର ସବୁ ଦୋଷ।'

ପୋଲିସବାବୁ ଥାନାକୁ ଡକେଇ କୁକୁର ବଦଳରେ ମତେ ବାଡ଼େଇଲେ। ଦୋକାନ ବନ୍ଦ କରି ଦେବେ ବୋଲି ଧମକେଇଲେ। ଇଂଜେକ୍‌ସନ୍ ବାବଦକୁ ପାଞ୍ଚ ଶହ ଟଙ୍କା ଝଡ଼େଇଲେ । ସେଥିପାଇଁ ଧାର, କରଜ କଲି ସିନା, ତଥାପି ମୁଁ ବୁଟା ଉପରେ ରାଗିଲି ନାହିଁ। କାରଣ ତା'ଡ୍ୟୁଟି ସେ ଠିକ୍ ଭାବରେ କରିଛି। ସେ କ'ଣ ଜାଣିଥିଲା ଯେ, ଏଇଟା ପୋଲିସବାବୁଙ୍କ ଗାଈ ବୋଲି ?

ସେଇ ଦିନ ବୁଟାକୁ କହି ଦେଲି, 'ଅନ୍ୟାୟ ଦେଖିଲେ, ଲଢ଼ିବୁ। କାମୁଡ଼ିବୁ। ଚୋର କି ପୋଲିସ କାହାରିକୁ ଛାଡ଼ିବୁ ନାହିଁ।' ବୁଟା ମୋ କଥାକୁ ଅକ୍ଷରେ ଅକ୍ଷରେ ପାଳନ କଲା। ଦୁଇ ଚାରି ଦିନ ଯାଇଛି କି ନାହିଁ, ହଠାତ ଦିନେ ଦେଖିଲି, ବୁଟା ଚେନ୍ ଛିଡ଼େଇ ଆସି ବହି ଦୋକାନରେ ହାଜର। ତା' ଦିହ ଯାକ ଖଣ୍ଡିଆ ଖାବରା ହେଇ ରକ୍ତ ଝରୁଛି। କଥା କ'ଣ ? ବୁଟାକୁ ଏମିତି କଲା କିଏ ? ?

ଦୋକାନ ବନ୍ଦ କରି ଘରକୁ ଦୌଡ଼ିଲି। ବୁଟାର ଠାର ମୁଁ ବୁଝିପାରେ। ସେ ଜଣେଇ ଦେଲା, ଘର ମାଲିକର ପୁଅଟା ତାକୁ ପିଟି ପିଟି ଏମିତି କରିଛି। କିନ୍ତୁ ବୁଟାର ଦୋଷ କ'ଣ ଜାଣି ପାରିଲି ନାହିଁ।

ଘର ମାଲିକ ମତେ ସଫା ସଫା ଜଣେଇ ଦେଲା, 'ତୋ କୁକୁରକୁ ଜଳାତଙ୍କ ରୋଗ ହେଇଛି। ତାକୁ ନେଇ ମ୍ୟୁନିସିପାଲିଟିରେ ଦେ। ନହେଲେ ଆଜି ମୋ ଘର ଛାଡ଼।'

ମୁଁ ତାକୁ ବୁଝେଇଲି, 'ବୁଟାକୁ ମୁଁ ତିନି ଶହ ଟଙ୍କିଆ ଆଣ୍ଟି-ରାବିସ୍ ଇଂଜେକ୍‌ସନ୍ ଦେଇଚି। ତାକୁ ଜଳାତଙ୍କ ରୋଗ ହେବ ନାହିଁ। ତା'ପରେ ପାଗଳା ହେବାର ଲକ୍ଷଣ ତ ତା'ଠେଇଁ କିଛି ଦେଖା ଯାଉନାହିଁ। ମିଛରେ ବୁଟା ନାଆଁରେ ବଦନାମୀ କରୁଛ କାହିଁକି ? ବରଂ ମୁଁ ଆଜି ଘର ଛାଡ଼ି ଦେବି ସିନା, କିନ୍ତୁ ବୁଟାକୁ ଛାଡ଼ି ପାରିବି ନାହିଁ।'

ସେ ଦିନ ସିନା ରାଗରେ ଘର ଛାଡ଼ି ଦେଲି, ଆଜ୍ଞା ! ବୁଟାକୁ ଦେଖି ଆଖପାଖରେ ମୋତେ ଆଉ କେହି ଭଡ଼ାରେ ଘର ଦେଲେ ନାହିଁ। ଅଖାରେ କଡ଼େଇ, ଡେକ୍‌ଚି ଥାଳି ଆଉ କନ୍ଥା ପୂରେଇ, ଖଟିଆଟାକୁ କାନ୍ଧରେ ଧରି ବହୁତ ବୁଲିଲି। ଏଣେ ଦୋକାନଟା ବନ୍ଦ ରହିଲା। ତେଣେ କରଜ ବଢ଼ି ବଢ଼ି ଚାଲିଲା।

ବୁଟା ମୋର ସବୁ କଥା ବୁଝୁଥିଲା। ମୁଁ ତାକୁ କହିଲି, 'ବୁଟାରେ ! ମୁଁ ଆଉ ପାରିବି ନାହିଁ. ତୁ ଯୋଉଠିକି ପାରୁଛୁ ଚାଲିଯା'। ମୁଁ ଯାଉଛି, ସେଇ ଘର ମାଲିକ ପାଖରେ ଭୁଲ ମାଗି ତା'ର ସେ ଭଙ୍ଗା ଘର ଖଣ୍ଡିକୁ ପୁଣି ଭଡ଼ାରେ ନେଇ ରହିବି। ପେଟର ଦାଉ ଆଉ ସମ୍ଭାଳି ପାରୁନି।'

ମୋ କଥା ଶୁଣି ବୁଟା ଆଖିରେ ଲୁହ ଝରୁଥିଲା। ମୁଁ ଆଣ୍ଠୁ ଭିତରେ ମୁହଁ ଲୁଚେଇ ବହୁତ କାନ୍ଦିଲି। ଏହା ଭିତରେ ବୁଟା କେତେବେଳେ ସେଇଠୁ ଚାଲି ଯାଇଛି।

ବଡ଼ ଅଭିମାନିଆ ପୁଅଟା ମୋର ବୁଟା। ମୋ ଦୁଃଖ ସେ ସହି ପାରିଲା ନାହିଁ। କୁଆଡ଼େ ଚାଲିଗଲା ଯେ, ଆଉ ତାକୁ ଖୋଜି ଖୋଜି ପାଇଲି ନାହିଁ।

ମନକୁ ଟାଣ କଲି। ପୁଣି ଘରବାଲା ପାଖରେ ଶରଣ ପଶିଲି। ମୋ ଦୋକାନ ଖୋଲିଲା। ଦୋକାନଟା ସିନା ଖୋଲିଦେଲି ଆଜ୍ଞା ! ଆଉ ମୋ ଘରେ ରୋଷେଇ

ହେଲା ନାହିଁ। ଭୋକ ହେଲେ, କେତେବେଳେ ମୁଠାଏ ରାସ୍ତା ପାଖ ହୋଟେଲରେ ଖାଇ ଦିଏ। ରାତିରେ ଅଧେ ଦିନ ଉପାସ ରହିଯାଏ। ସବୁବେଳେ ମୋ କାନରେ ବୁଟାର କୁଁ-କୁଁ ଶବ୍ଦ ଶୁଣାଯାଏ। ମୁଁ ଅଥୟ ହୁଏ। କିନ୍ତୁ ବୁଟାକୁ ଯଦି କେବେ ପାଇଯାଏ, ତାକୁ ତ ଘରକୁ ଆଣି ପାରିବି ନାହିଁ। ଘରବାଲାକୁ କଥା ଦେଇଛି, 'ବୁଟା ଆଉ ଏ ଘରକୁ ଆସିବ ନାହିଁ।'

ମୋ ମନଟା ସବୁବେଳେ ବୁଟାକୁ ଖୋଜେ। କାଲି ଦୋକାନ ଖୋଲି ଭାବୁଥିଲି, କିଛି ଟଙ୍କା ପାସ୍‌ବୁକ୍‌ରେ ରଖିବି। ଭଲ ଘରଟିଏ ଭଡ଼ାରେ ନେଇ ମୋ ସାଙ୍ଗରେ ବୁଟାକୁ ଆଣି ରଖିବି। ଏତିକି ବେଳେ ମ୍ୟୁନିସିପାଲିଟିର ବଡ଼ବାବୁ ଆସି ମୋ ଦୋକାନ ପାଖରେ ପହଞ୍ଚିଗଲେ। ମୁଁ ତାଙ୍କୁ ଦେଖି ପକେଇ ବୁଟା କଥା ଆରମ୍ଭ କରି ଦେଲି। ସେ କହିଲେ, 'ମୁଁ ତୋ ବୁଟା କୁକୁରକୁ ଚିହ୍ନେ। କିନ୍ତୁ ଆଜି ତ ତାକୁ କୁକୁରଧରାମାନେ ଚିମୁଟାରେ ଧରି ଆମ ଗାଡ଼ିରେ ନେଉଥିଲେ। ଚାରିଟା ବେଳେ ଦେଖିଲି, ପୁଳାଏ ଖଣ୍ଡ କୁକୁରଙ୍କୁ ବିଷ ଇଂଜେକ୍‌ସନ୍ ଦେଇ ମରାଗଲା। ତା'ଭିତରେ ତୋ ବୁଟା ବି ଥିଲା।'

କୁହନ୍ତୁ ଆଜ୍ଞା ! ମୋ ବୁଟା କ'ଣ ପାଗଳା କୁକୁର ନା ବୁଲା କୁକୁର ହେଇଛି ? ତାକୁ ତମେ ନେଇ ବିଷ ଇଂଜେକ୍‌ସନ୍ ଦେଇଦବ ?

ମୁଁ ଆଉ ଏତେ ବଡ଼ ଆଘାତଟାକୁ ସହି ପାରିଲି ନାହିଁ ଆଜ୍ଞା ! ସବୁ ତକ ରାଗ, ରୋଷ, ଅଭିମାନ, ଆଉ ମାନସିକ ଯନ୍ତ୍ରଣାକୁ ନେଇ ବଡ଼ବାବୁଙ୍କ ଗାଲରେ ବସେଇ ଦେଲି - ଶକ୍ତ ଚାପଡ଼ଟାଏ।

ତା'ପରେ ମୋର କ'ଣ ହେଲା, ମୁଁ କିଛି ଜାଣି ନାହିଁ ଆଜ୍ଞା ! ମୋର କିନ୍ତୁ ସବୁ ଭୁଲ। ମୁଁ ତ ଗରିବଟାଏ। କୁକୁର ପାଳିବା ପାଇଁ ମୁଁ ଅଯୋଗ୍ୟ। ବଡ଼ବାବୁଙ୍କୁ ମାରି ମୁଁ ବହୁତ ବଡ଼ ଭୁଲ କରିଛି। ମୋତେ କ୍ଷମା କରି ଦେବେ ଆଜ୍ଞା।"

ମହନାର ବୟାନ ଶୁଣି ଆମେ ଉପସ୍ଥିତ ସାମ୍ବାଦିକଗଣ ସ୍ତମ୍ଭୀଭୂତ ହେଇ ଯାଇଥିଲୁ।

୦୦୦



# ଷଣ୍ଢ ନାଚ

ଓଳାଭର ବଜାର ଶେଷରେ ଯେଉଁ ଛୋଟିଆ ଚାଳଘର ଖଣ୍ଡେ ଅଛି, ସେହି ଘରେ ରହନ୍ତି - ମନୁଆଁ ଆଉ ମୁନିଆଁ । ସେ ଘରେ ତାଲା ପଡ଼େନା । ଦୁଆରେ ଖଣ୍ଡିଏ ଟାଟି। ତା'ଉପରେ ବଡ଼ ଲମ୍ବା ଅଖା ଖଣ୍ଡେ ଝୁଲୁଥାଏ ।

ମନୁଆଁର ବୟସ ପାଖାପାଖି ସତୁରୀ ହେବ । ଆଉ ମୁନିଆଁର ବୟସ ମାତ୍ର ଚାରି ବର୍ଷ । ଦୁହେଁ ଦୁହିଁଙ୍କୁ ଖୁବ୍ ଭଲ ପାଆନ୍ତି ।

ଶୀତ ଦିନେ ମନୁଆଁ ତା'ର ଛିଣ୍ଡା କନ୍ଥାକୁ ଆଉ ଟିକେ ଲମ୍ବେଇ ଦେଲେ, ମୁନିଆଁ ତା'ପାଖକୁ ଲାଗି ଶୋଇଯାଏ । କିନ୍ତୁ ଖରା ଦିନେ ସେ ଖୋଲା ଆକାଶ ତଳେ ଶୋଇବାକୁ ଭଲ ପାଏ ।

ଦିନଯାକ ବୁଲି ସେମାନେ ଯାହା ଆଣିଥା'ନ୍ତି, ତାକୁ ବାଣ୍ଟିକୁଣ୍ଟି ଖାଆନ୍ତି । କିନ୍ତୁ କଞ୍ଚା ପରିବା ଆଉ ପାଚିଲା କଦଳୀ ପ୍ରତି ମୁନିଆଁର ନଜର ବେଶି ।

ମନୁଆ ତାକୁ ଲୋଭ କରେ ନାହିଁ। ସବୁଯାକ ତାକୁ ବଢ଼େଇ ଦେଇ ମନେ ମନେ କହେ, 'ଛୁଆଟା ପେଟଭରି ଟିକେ ଖାଉ । ଦେହରେ ତାକତ ହେଲେ ସିନା ନାଚିବ ।

- ମୋର ତ ବୟସ ଗଲାଣି । ହଜମି କରିବାର ଶକ୍ତି ବି ନାହିଁ । ଭାତ ମୁଠାଏ, ପିତା ଶୁଖୁଆ ପୋଡ଼ା ଟିକେ ହେଲେ ଗଲା। ସେ ପିଲାଟାଏ। ତା'ର ବେଶି ଖାଦ୍ୟ ଦରକାର। ସେ ଖାଉ ।

- ତା'ରି ପାଇଁ ତ ମୁଁ ଦିନକୁ ପାଞ୍ଚ ସାତ ଟଙ୍କାର ଖୁଚୁରା ପଇସା ପାଇ ଯାଉଛି। ସେଥିରେ ଔଷଧ ପତ୍ର, ବିଡ଼ି କଠାଏ ଆଉ ଚା'ଜଳଖିଆ ହେଇ ଯାଉଛି।

- ତାକୁ ଦେଖିକି ତ ଗାଆଁ ମାଇପେ, କିଏ ବାଡ଼ିରୁ ବାଇଗଣଟିଏ ଆଣି ଦଉଛି ତ କିଏ କଖାରୁ ଫାଳେ। ଆଉ କିଏ ପୋଇନାଡ଼ି ଖଣ୍ଡେ ଆଣି ମୋ ଅଖାରେ ପୂରେଇ ଦେଇଯାଉଛି। ଯାହା ଚାଉଳ ମୁଠାକ ମିଳେ, ତାକୁ ସାଇତି ରଖେ । ବର୍ଷା ଦିନେ ପଦାକୁ ଯାଇ ନହେଲେ କି ଦିହ ପା' ଖରାପ ହେଲେ, ଆମ ଦି'ଜଣଙ୍କର ସେଥିରେ ବର୍ଷଯାକ ଚଳିଯାଏ ।

- ମୁନିଆଁ ପାଇଁ ମୋର ଏ'ସବୁ ରୋଜଗାର। ସିଏ ତ ଜାଣିକି ମୋର

ରୋଜଗାରିଆ ଭେଣ୍ଡିଆ ପୁଅଟାଏ । ତା'ପାଇଁ ମୋର ସବୁ କିଛି। ସେ ହେଉଛି, ମୋର ଜୀବନ ଧନ । ତା'ର ସୁଖ ଦୁଃଖ ହେଉଛି, ମୋର ସୁଖ-ଦୁଃଖ।

- ମୁନିଆଁର ସିନା ପାଟି ଖୋଲେ ନାହିଁ । କିନ୍ତୁ ସେ ସବୁକଥା ବୁଝେ । ବୁଝିବ ନାଇଁ କେମିତି ? କଅଁଳା ବାଛୁରୀଟା ଆସି ଭେଣ୍ଡିଆ ଷଣ୍ଢ ହେଲାଣି । ମଣିଷ ସାଙ୍ଗରେ ରହୁଛି। ବୁଝିବ ନାହିଁ କେମିତି ?

- ମୋ ଅନ୍ତେ ମୁନିଆଁ ହେବ, ମୋ ଘରର ଉତ୍ତରାଧିକାରୀ । ସିଏ ତ ମୋତେ ବାପା ବୋଲି ଧରି ନେଇଛି, ତା'ଅଧିକାରକୁ ଆଉ କିଏ ଛଡ଼େଇ ନବ ? ଆରପାରିକୁ ଯିବା ପୂର୍ବରୁ ତାକୁ ସବୁକଥା ବୁଝେଇ ଦେଇଯିବି ।

"ବାପାରେ ! ଏ'ଦୁନିଆର ହାଲ୍ ତୁ ଜାଣି ନାହୁଁ, ତୋ'ମୁନିଆଁ ଶିଙ୍ଗ ଦିଇଟା ଉପରେ ତୁ ଭରସା ରଖିବୁ। ଅସଲ ବେଳେ ଶିଙ୍ଗଛଡ଼ା ତୋର କେହି ଭରସା ନଥିବେ। ଘରଟାକୁ ସମ୍ଭାଳି ରଖିବୁ । ଯେତେ ଭୋକ ଲାଗିଲେ ବି ଚାଳ ଓଲାରି ଛଣ ଖାଇଯିବୁ ନାହିଁ । ଖଟିବୁ, ନାଚିବୁ ରୋଜଗାର କରି ଖାଇବୁ । ଦେଖ, ମୋତେ ସତୁରୀ ପୂରି ଗଲାଣି। କେତେ ଲୋକଙ୍କର କେତେ କାମ ନ କରିଛି ? ଜନମ ଦେଇଥିବା ପୁଅକୁ ପେଟରେ ଓଦାକନା ଦେଇ ବଢ଼େଇଥିଲି । ସିଏ ତ ନିଜର ହେଲା ନାହିଁ । ମଦ ପିଇକି ଅମଣିଷ ହେଲା । ନିଜ ମାଇକିନାକୁ ମାରି ପୁଣି ଜିଅଲ ଗଲା। ମୋ ଅନ୍ତେ ତତେ କିଏ ସାହାଯ୍ୟ କରିବ ?"

ଷଣ୍ଢଗୁଡ଼ାକ ଲଢ଼େଇ କରୁଥିବାର ଆମେ ପିଲାବେଲୁ ଦେଖୁ । ଗାଈଗୋଠରେ ଏମାନେ ଜବରଦସ୍ତି ପଶି ବଳଦମାନଙ୍କୁ ମାରି ଲହୂଲୁହାଣ କରିପକାନ୍ତି । ଷଣ୍ଢଟା ଯଦି ଏକୁଟିଆ ଗାଆଁ ଦାଣ୍ଡରେ ଝୁଲି ଝୁଲି ଚାଲିଯାଏ, ତେବେ କୁକୁରଦଳ ତା'ପଛେ ପଛେ ଭୁକି ଭୁକି ଥକି ଯାଆନ୍ତି । ଷଣ୍ଢକୁ ପୁଣି ନଡରେ କିଏ ?

ବାହାଘର ବେଳେ ଅବଶ୍ୟ ଷଣ୍ଢ ଲଢ଼େଇ ଖେଳଟା ବେଶ୍ ଜମେ । କିନ୍ତୁ ମୁନିଆଁ ଲଢ଼େଇ କରେନା, ନାଚ କରେ। ପିଲାଙ୍କ ଠାରୁ ଆରମ୍ଭ କରି ବୁଢ଼ା ପର୍ଯ୍ୟନ୍ତ ସମସ୍ତଙ୍କର ମନୋରଞ୍ଜନ କରାଏ । ଏହା ଥିଲା, ସତରେ ଏକ ବ୍ୟତିକ୍ରମ ।

ଚାଉଳ କୁଣ୍ଡାଏ ମନୁଆଁ ଥଳିରେ ଦେଇସାରି ଷଣ୍ଢ କଥା କିଏ ଯଦି ପଚାରି ଦିଏ, ସେ ଗପିଚାଲେ - "ଏ ମୁନିଆଁଟା ଖାଲି ଷଣ୍ଢ ନୁହେଁ ବାବୁ, ମହାଦେବଙ୍କର ଅସଲ ବାହାନ। ଦେଖ କେମିତି ସଫା ସୁତୁରା ରହିଛି । ତା' ଲାଙ୍ଗୁଳରେ ଘୁଅ କି ମୁତ ଟିକିଏ ଲାଗେନା।

ତା'ଶିଙ୍ଗରେ ଯୋଉ ଛାଉଣୀ ଲାଗିଛି ନା, ସେ କୋଉଥିରେ ତିଆରି ଜାଣିଛ ? ତମେ କହି ପାରିବ ନାହିଁ । ମୁଁ ବି କହି ପାରିବି ନାହିଁ । ଜଣେ ମାଡ୍ରୁଆଳିବାବୁ ଲଗେଇ ଦେଇଛି । ଭାରି ପଇସାବାଲା ଲୋକ । ମୁନିଆଁର ନାଚ ଦେଖି ସିଏ ଏକାଥରେ ଖୁସି ହେଇ ଯାଇଥିଲେ ଯେ, ସେଇଦିନ ଓଳାଭର ବଜାରର ବଣିଆ ପାଖକୁ ଯାଇ ମୁନିଆଁ ଶିଙ୍ଗ ମାପରେ ଏଇ ଛାଉଣି ଦି'ଟାକୁ ତିଆରି କରେଇ ଦେଲେ । ସୁନାରେ ହେଇଥାଉ କି ରୂପାରେ ହେଇଥାଉ । ସେଥିରେ ମୋର ଯାଏ କେତେ, ଆସେ କେତେ ? ସେ ସଂପତ୍ତିର ମାଲିକ ତ ହଉଛି ମୁନିଆଁ ।"

ପୁଣି ସେ କହି ଚାଲେ - "ମୁନିଆଁର ପିଲାବେଳ କଥା କହିବି ବାବୁ, ଶୁଣିବ ! ପୁଅ ତ ମତେ ଘରୁ ବାହାର କରିଦେଲା । ବୁଢ଼ାଲୋକ ଆଉ କ'ଣ କରିଥା'ନ୍ତି ? ଦୁଆର ଦୁଆର ବୁଲି ଭିକ ମାଗୁଥିଲି।

- ଦିନେ ଜାଗୁଳିପଡ଼ା ଗାଆଁର ବିଶାଳଘର ଦୁଆରେ ଠିଆ ହେଇଛି । ତାଙ୍କ ଗାଈ କଷ୍ଟ ପାଇଲା । ଭଉତୁ କଷ୍ଟ ବାବୁ । ଘରେ ମରଦ ଲୋକ କେହି ନଥା'ନ୍ତି । ମୁଁ କହିଲି, 'ବାଛୁରୀ ଗୋଡ଼ଟାକୁ ଟିକେ ଟାଣି ଆଣିଲେ ତ ଗଲା ।' ଗାଈର ଖାଉନ୍ଦାଣୀ ମା' ହାଉଳି ଖାଇ କାନ୍ଦୁଥାଏ । ତା'ଦୁଃଖ ସହି ପାରିଲି ନାହିଁ । ନିଜେ ଯାଇ ବାଛୁରୀ ଗୋଡ଼ ଦି'ଟାକୁ ଧରି ଟାଣି ଆଣିଲି । ଧଳା ଅଣ୍ଡିରା ବାଛୁରୀଟା ଖୁବ୍ ସୁସ୍ଥ ସବଳ ହେଇଥିଲା। ତା'ନାଳ ପଟପଟ ଦିହରେ ଆଞ୍ଜୁଳାଏ ଲୁଣ ବୁଣି ଦେଲି। ଗାଈ ଚାଟିଚୁଟି ତାକୁ ସଫା କରିଦେଲା।"

- ମୁଁ ଖାଉନ୍ଦାଣୀକୁ କହିଲି - "ଖୁଦ ଚାଉଳ ବିରି କୁଣ୍ଡା ମିଶେଇକି କୁର୍ଚ୍ଚି ହାଣ୍ଡି ଚୂଲିରେ ବସେଇ ଦିଅ । ଉଷୁମ ଉଷୁମ ବାଲ୍‌ତିଏ ଖଣ୍ଡ ଗାଈକୁ ଖାଇବାକୁ ଦିଅ । ମୁଁ ବାଛୁରୀର ନଖ ଛିଣ୍ଡେଇ ଦଉଛି । ଫୁଲ ପଡ଼ିଲେ, ମୁଁ ତାକୁ ଦେଖିବି ।"

ବାଛୁରୀକୁ ଦେଖିବାକୁ ସାଇ ପଡ଼ିଶାର କେତେ ପିଲା-ପିଚିକା, ମାଇପେ ଜମି ଗଲେ । ବାଛୁରୀ ପିଠିର ଜଟ ଉପରେ ମୋ ନଜର ପଡ଼ିଗଲା । ମୁଁ କହିଲି "ଏଇଟା ତ ମହାଦେବଙ୍କ ବାହାନ ଷଣ୍ଢ ଜନ୍ମ ହେଇଛି ।"

ମୋ କଥା ଶୁଣି କିଏ କେତେ ରକମ କଥା କହିଲେ । ଖାଉନ୍ଦାଣୀ ମା' ଷଣ୍ଢ ଜନ୍ମ ହେବା କଥା ଶୁଣି ଭାରି ମନଦୁଃଖ କରି କହିଲେ - "ଷଣ୍ଢ ଛୁଆଟା ବଢ଼ିଗଲେ, ଦୁନିଆ ଯାକର ଝଗଡ଼ା ଆଣି ଘରେ ପୂରେଇବ । ତାକୁ ତ'ଘରେ ବାନ୍ଧି ରଖି ହବ ନାହିଁ । ସମସ୍ତଙ୍କର ଦରକାର ବେଳକୁ ଖୋଜା ପଡ଼ିବ ସିନା, ଗାଳି ଦବାକୁ ଲୋକ ଆମ ଘରକୁ ଆସିବେ। ଏ'ଷଣ୍ଢଟା ଆମ ଘରକୁ ଆସିଲା ନାହିଁ ଯେ, ଗାଆଁ ଯାକର ଝଗଡ଼ାକୁ ଡାକି ଆଣିଲା।"

ମୁଁ ତାଙ୍କୁ ବୁଝେଇଲି - "ତମେ ବ୍ୟସ୍ତ ହୁଅନା ମାଆ ! ବାଛୁରୀଟା ଟିକେ ଟାଣ ହେଇଯାଉ, ମୁଁ ତାକୁ ନେଇଯିବି । ମୁଁ ତ ଘରେ ଏକୁଟିଆ। ଦି'ଜଣ ସାଙ୍ଗ ହେଇ ରହିବୁ।

- ମାଆ ମୋ କଥାରେ ରାଜି ହୋଇଗଲେ ।

ବୁଝିଲ ବାବୁ ! ମୁଁ ତ ଭିକାରିଟା । ତା'କୁ ପୁଣି କ'ଣ ଖାଇବାକୁ ଦେବି ? କେତେବେଳେ ଜଗାରଖା କରିବି ? ସେ କଥା ସେଦିନ ଭାବି ପାରି ନଥିଲି । ଯୋଉ ଦିନ ମୁଁ ସେ ଗାଆଁକୁ ଯାଏ, ମୋ ଛୁଆ ଷଣ୍ଢକୁ ଦେଖି ଆସେ। ଆଉଁସି ଦିଏ। ତା'ମୁହଁରେ ମୋ ମୁହଁକୁ ଲଗେଇ ଖୁବ୍ ଗେଲ କରେ । ଭିକ ଚାଉଳରୁ ମୁଠାଏ ଆଣି ତାକୁ ଚଖାଏ । ସେ ମୋତେ ଦେଖିଲେ, ଆନନ୍ଦରେ କୁରୁଳି ଉଠେ। ମୋ ପଛେ ପଛେ ଗାଆଁ ଶେଷ ମୁଣ୍ଡ ପର୍ଯ୍ୟନ୍ତ ଚାଲି ଆସେ । ଲମ୍ୱାରଡ଼ି ଦେଇ ମତେ ବିଦାୟ ଦିଏ ।

ଦି'ମାସ ବେଳକୁ ସେ ଭାରି ଚାଲାଖ ହେଇଗଲା । ବିଲକୁ ପଳେଇ ଯାଇ ତା'ମାଆଠୁ ଗୋଠରୁ ଦୁଧ ପିଇଦେଇ ଚାଲି ଆସେ । ତେଣୁ ତା' ବେକରେ ପଘା ଲଗା ହେଲା ।

ତା'ବେକରେ ଟିକି ପଘା ଦେଖି ମୋତେ ଭାରି ବାଧିଲା ବାବୁ । ମୁଁ ମାଆଙ୍କୁ କହିଲି "ଛୁଆଟାକୁ ଇମିତି ଖରାରେ ବାନ୍ଧି ରଖିଲେ, ତମକୁ ପାପ ଲାଗିବ । ଆଉ ମାସକୁ ମତେ ଦେଇଦବ । ମୁଁ ସାଙ୍ଗରେ ନେଇଯିବି ।

ଖାଉନ୍ଦାଣୀ ବିନା ବାଛୁରୀରେ ଦୁଧ ଦୁହିଁବା ଅଭ୍ୟାସ କରି ସାରିଥିଲେ । ତିନି ମାସର ଷଣ୍ଢଛୁଆ ମୋ ଘରକୁ ପଳେଇ ଆସିଲା । କଞ୍ଚା ପରିବା ଆଉ ପାଚିଲା କଦଳୀ ମାଗି ଆଣି ତାକୁ ଦିଏ । ପେଜ ମିଶା ଭାତରେ ଲୁଣ ଟିକିଏ ପକେଇ ଦେଲେ, ତା'ର ଖୁସି କହିଲେ ନସରେ ।

ମୁଁ ସବୁଦିନ ଭିକ ମାଗିବାକୁ ଯାଏ । ଛୁଆ ଷଣ୍ଢ ମୋ ପଛେ ଚାଲେ । ଦିନେ ଗାଆଁ ମୁଣ୍ଡରେ ଘୁଙ୍ଗୁର ନେନ୍ଥାଏ ପାଇଲି । କ'ଣ ବା କରିବି ତା'କୁ ? ଷଣ୍ଢ ଗୋଡ଼ରେ ବାନ୍ଧି ଦେଲି । ସେ ଗାଆଁ ଭିତରେ ଝୁମୁରୁ ଝୁମୁରୁ ଶବ୍ଦ କରି ସେହି ଦିନରୁ ଚାଲିଛି ଯେ ଚାଲିଛି।

ମୋ ଷଣ୍ଢ ଛୁଆକୁ ଦେଖି ଚଗଲା ଛୁଆଙ୍କର ଭିଡ଼ ଜମିଲା । ପିଲାଠୁ ବୁଢ଼ା ତ ମୋ ନାଆଁ ଧରି ଡାକନ୍ତି । ଥରେ କୁନି ଛୁଆଟି ମୋ ଷଣ୍ଢକୁ ଡାକିଲା - ମୁନିଆଁ ଷଣ୍ଢ । ସେହି ଦିନଠୁ ମୋ ଷଣ୍ଢ 'ମୁନିଆଁ' ନାଆଁରେ ପରିଚିତ ହେଇ ଯାଇଛି । ସମସ୍ତେ ତାକୁ ମୁନିଆଁ-ମୁନିଆଁ ଡାକୁଛନ୍ତି।

ଦିନେ ଭାବିଲି, ମୁନିଆଁ ଖାଲି ଘୁଙ୍ଗୁର ପିନ୍ଧି ଚାଲିଲେ, କେତେ ପିଲା ଖୁସି ହଉଛନ୍ତି। ସେ ଯଦି ଗୋଡ଼ ଉଠେଇ ନାଚନ୍ତା - କେଡ଼େ ମଜା ହୁଅନ୍ତା ସତେ !

ସେହି ଦିନ ସଂଜ ବେଳେ ଘରକୁ ଫେରି ମୁନିଆଁକୁ ଗୋଡ଼ ଉଠେଇ ନାଚିବା ଶିଖେଇଲି । ମନକୁ ମନ ଗୀତ ଫାନ୍ଦି ଗାଇଲି । ବଢ଼ିଆ ଜମିଲା । ନୂଆ ଢଙ୍ଗର କାମରେ ଆମ ଦି'ଜଣଙ୍କ ମନ ଲାଗି ରହିଲା ।

ଦିନେ ମୋ ଗଣ୍ଠୁଳି ଖୋଲି ଦେଖିଲି, ବହୁତ ଗୁଡ଼ାଏ ଖୁଚୁରା ପଇସା ଅଛି। ମୁନିଆଁକୁ ନେଇ ବଜାରକୁ ଗଲି । ତା'ଦିହକୁ ମାପ ଦେଇ ନାଲି ନେଳି ରଙ୍ଗର ପୋଷାକ ତିଆରି କରେଇ ଦେଲି । ପଇସା ରହିକି ହବ କ'ଣ ?

ବେକକୁ ରୁଞ୍ଜମାଳି, କାନକୁ କୁଣ୍ଡଳ ଆଣିଲି । ତା' ପିଠିର ଜଟ ଚାରି ପାଖକୁ ମାନିଲା ଭଳିଆ ଚାନ୍ଦୁଆ ପିନ୍ଧେଇ ଦେଲି। ମୁନିଆଁ ଠିଆ ହେଇ ଭାରି ଆଗ୍ରହରେ ସବୁ ଜିନିଷ ପିନ୍ଧିଲା ।

ମୁଁ ତା'ଆଗକୁ ଆସି ଦେଖିଲି, ମୁନିଆଁ ଆଉ ବାଛୁରୀ ପରି ଦିଶୁ ନାହିଁ । ବରଂ ଝିଅ ଶାଶୁଘରକୁ ଗଲାବେଳେ ଯେମିତି ଦିଶେ, ସେଇମିତି ଦିଶୁଛି । ମୋ ଛାତି କୁଣ୍ଢେ ମୋଟ ହେଇଗଲା । ମୋ ପାଟିରୁ ବାହାରି ପଡ଼ିଲା "ହେ ଭଗବାନ ! ତୁ ତ ମୋତେ ଝିଅଟିଏ ଦେଇ ନଥିଲୁ । ଦେଖ ମୋ ଝିଅ ମୁନିଆଁ କିମିତି ଶାଶୁଘର ଯିବାକୁ ସଜ ହେଇଛି ।"

ସେଇ ଦିନଠୁ ବାବୁ, ଆମର ଗୀତ ନାଚ ଚାଲିଛି । ମୋ ନିଜ ପୁଅ ସିନା ମତେ ଭିକାରି କରି ଦେଇଥିଲା, କିନ୍ତୁ ମୁନିଆଁ ଷଣ୍ଢ ମୋତେ ଭିକାରିରୁ କଳାକାର କରି ଦେଇଛି ବାବୁ। ମୋ ଗୀତକୁ ତା'ନାଚ ବଢ଼ିଆ ଜମିଛି।"

ooo

# ମିଠାବୁଢ଼ାର ରସମଲେଇ



ସେ ପଟ ଘରୁ କୁନି ଝିଅ ହଠାତ୍ ପାଟି କରି ଉଠିଲା - "ମାଆ ଦେଖିବ ଆସ। ମେଞ୍ଚା ମେଞ୍ଚା ପିମ୍ପୁଡ଼ି ଆସି ଆମ କାନ୍ଥରେ ମଳା ବାନ୍ଧିଲେଣି। ଆସ ନା' ଦେଖିବ । ଏ' ପଟରେ ଆହୁରି ଗୋଟାଏ ମଳା। ଆରେ ବାବା ! କାନ୍ଥ ସାରା ଖାଲି କଳା ପିମ୍ପୁଡ଼ି !"

ତରବର ହେଇ ମିନୁ ଦୌଡ଼ି ଆସିଲା ରୋଷେଇ ଘରକୁ । ଓଦା ହାତକୁ ନିଜ କାନିରେ ରଗଡ଼ି ରଗଡ଼ି। କାନ୍ଥର ଏପଟ ସେପଟ ଚାରି ଆଡ଼କୁ ଚାହିଁଲା । ସତେ ତ ଏଇ ବର୍ଷ ଚୂନ ଲଗା ଯାଇଥିବା ଧଳା କାନ୍ଥଟାରେ ପୂଳା ପୂଳା ପିମ୍ପୁଡ଼ି। ଏମିତି ନେସି ହେଇ ଯାଇଛନ୍ତି ଯେ, କାନ୍ଥଟା ଆଉ ଦେଖାଯାଉ ନାହିଁ । ପଶ୍ଚିମ ଆକାଶକୁ କଳାମେଘ ଢାଙ୍କିଲା ପରି ଦିଶୁଛି।

"କୁଆଡୁ ଆସିଲେ, ଏ'ଗୁଡ଼ାକ ? ହେ, ଭଗବାନ ! ଆଜି ଏ'କି ବିଲକ୍ଷଣ ଦେଖିଲା ମଣିଷ । ଘରକୁ ଆମର କି ବିପଦ ପଡ଼ିବ କିଏ ଜାଣେ।"

ସେଇଠୁ ଥାଇ ମିନୁ ବଡ଼ ପାଟିରେ ଡାକ ପକେଇଲା "ତମକୁ ଶୁଭୁ ନାହିଁକି ? ନିଜ ଆଖିରେ ଆସି ଦେଖି ଦେଇ ଯାଅ। ମୋ କଥାକୁ ତ ବିଶ୍ୱାସ କରିବ ନାହିଁ। ପିମ୍ପୁଡ଼ି ଭେଳା ଆସି ଅଶୁଭ ସଂକେତ ଦେଇ ଗଲେଣି।"

ବିଜନ ଜାଣେ, ବିନା କାରଣରେ ମିନୁ ପାଟି ଚିଲେଇ କଥା କହେ। ସାମାନ୍ୟ ଘଟଣାଟାକୁ ଅତ୍ୟନ୍ତ ଗୁରୁତ୍ୱ ଦିଏ। ପୁଣି ତୁରନ୍ତ ତା'ର ପ୍ରତିକାର ପାଇଁ ବ୍ୟସ୍ତ ହୁଏ। ନିଜେ ତ ଯାହା ହୁଏ, ତା'ସଂଗେ ସଂଗେ ସାରା ପରିବାରର ସଦସ୍ୟ ଆଉ ଚିହ୍ନା ପରିଚୟ, ସାହି-ପଡ଼ିଶା ଲୋକଙ୍କୁ ବି ବ୍ୟସ୍ତ କରି ପକାଏ। ବିଶେଷ କରି ସେ ସମସ୍ୟାର ସମାଧାନ ନହେବା ପର୍ଯ୍ୟନ୍ତ କାହାକୁ ଆଉ କୌଣସି କାମ କରାଇ ଦିଏ ନାହିଁ।

ବିଜନ ସେପଟ ଘରେ କ'ଣ ଗୋଟାଏ ହିସାବ ଫର୍ଦ୍ଦ ଧରି ବ୍ୟସ୍ତ । ସେ ମିନୁର କଥାକୁ ଶୁଣି ନଶୁଣିଲା ପରି ଟିକିଏ ଗାଲେଇ ଦେଲା।

ଦୁମ୍ ଦୁମ୍ ହେଇ ମିନୁ ସେ ଘରୁ ଆସି କହି ଚାଲିଲା - "ମୁଁ ସେଇଠୁ ଡାକି ହଉଛି, ତମେ ଏଠି ଦାରୁଭୂତ ମୁରାରୀ ହେଇ ବସି ରହିଛ । ତେଣେ ଘରବୁଡ଼ି ପାଣି ଆଣୁଏ । କାଗଜପତ୍ର ରଖିକି ସେ'ଘରକୁ ଆଗ ଚାଲିଲ । ନିଜ ଆଖିରେ ଦେଖିବ।"

ବିଜନ ହାତରୁ କଲମଟାକୁ ଛଡ଼େଇ ନେଇ କ୍ୟାପ୍ ଲଗାଇ ଦେଲା । ହିସାବ ଫର୍ଦ୍ଦଟାକୁ ଚାରି ଭାଙ୍ଗ କରି ତା'ଉପରେ ଅଇଁଠା ଚା'କପ୍‌ଟାକୁ ଚାପା ଦେଇଦେଲା ।

"ଓଃ ! କାହିଁକି ଏମିତି ହଉଛ କହିଲ ? ଆରେ, ମାଟି ଓଦା ହୋଇଯାଇଥିବ, ପିମ୍ପୁଡ଼ିମାନେ ଆଶ୍ରା ଖୋଜୁ ଖୋଜୁ କାନ୍ଥରେ ଚଢ଼ି ଯାଇଥିବେ । ଏମିତି ବ୍ୟସ୍ତ ହଉଛ କାହିଁକି ? ଚିନିଟିକେ ବୁଣି ଦିଅ । ତାକୁ ଖାଇ ସାରିଲେ, ସେମାନେ ତାଙ୍କ ଜାଗାକୁ ଫେରିଯିବେ ନାହିଁକି ? ଯାଅ, ଆରାମରେ ତମ କାମ ତମେ କର । ମୋତେ ମୋ କାମ କରିବାକୁ ଦିଅ ।"

ଟିକେ ଚଢ଼ାଗଳାରେ ମିନୁକୁ କହି ପକାଇଲା ବିଜନ ।

ପୁଣି ନିଜ କାମରେ ଲାଗି ପଡ଼ିଲା ।

ବିଜନର କଥା ପଦକ ଚାଏଁ କରି ଲାଗିଗଲା ମିନୁକୁ । ରାଗ ତମ ତମ ହେଇ ସେ ପିମ୍ପୁଡ଼ି ଥିବା ଘରକୁ ଯାଇ କଟମଟ କରି ଚାହିଁଲା । ସେମାନଙ୍କୁ ସମୂଳେ କେମିତି ସଫା କରିବାକୁ ପଡ଼ିବ, ଚିନ୍ତା କଲା ।

ଅସରପା ମରା ଔଷଧ ସ୍ପ୍ରେୟରରେ ଭର୍ତ୍ତି ହେଇ ରହିଥିଲା । ତାକୁ ଆଣି ନିଜେ ପିମ୍ପୁଡ଼ି ମେଳା ଉପରେ ସ୍ପ୍ରେ କରି ଚାଲିଲା । ଚାହୁଁ ଚାହୁଁ କାନ୍ଥଟା ପୂର୍ବପରି ଧଳା ଦିଶିଲା । କୁନି ଝିଅଟା ତାଳି ମାରି ହସୁଥିଲା ।

ମହାଭାରତ ଯୁଦ୍ଧରେ ହଜାରେ ସଂଖ୍ୟାରେ ଶତ୍ରୁଙ୍କୁ ନିପାତ କରି ଫେରୁଥିବା ସୈନିକ ପରି ତା'ପାଖକୁ ଫେରି ଆସିଲା ମିନୁ ।

ବିଜନ କ'ଣ ଲେଖି ଚାଲିଥାଏ । ଟିକିଏ ବି ଆଡ଼ ଆଖିରେ ତାକୁ ଚାହିଁଲା ନାହିଁ, କିମ୍ବା ପ୍ରଶଂସା ପଦେ କଲାନାହିଁ । ଭୀଷଣ ରାଗ ହେଲା ମିନୁର । ରୁକ୍ଷ କଣ୍ଠରେ କହିଲା - "ତମେ କ'ଣ ଏ'ଘରର ମଣିଷ ନୁହଁ କି ? ଦିନସାରା ଅଫିସରେ ଅଫିସ କାମ । ଘରକୁ ଆସିଲେ ସେହି ଅଫିସ କାମ । ତମେ ଜାଣିକି ଏକଲା ଚାକିରି କରିଛ ।

ଦୁନିଆ ଯାକର ଲୋକ ପାଞ୍ଚଟା ବେଳକୁ ଆସି ଘରକାମ, ସଉଦାପତ୍ର, ଭଲମନ୍ଦ ସବୁକାମ କରୁଛନ୍ତି । ପାଖଘର ଦତ୍ତବାବୁଙ୍କୁ ତମେ ନିଜେ ଦେଖୁଛ ତ, ହାଣ୍ଡିଶାଳେ ପଶି ରୋଷେଇ ବି କରି ଦେଉଛନ୍ତି । ସପ୍ତାହରେ ଦି'ଥର ପିଲାଛୁଆଙ୍କୁ ନେଇ, ଭଲ ହୋଟେଲରେ ଖୁଆଇ ବୁଲେଇ ଆଣୁଛନ୍ତି । ଆଉ ତମେ... ?"

ଛାଡ଼, ଏ'ସବୁ ମୋ ଭାଗ୍ୟର ଦୋଷ । ଏଇଠି ବସିଥିବ ଯେ ବସିଥିବ । ଘରେ ନିଆଁ ଲାଗି ପୋଡ଼ି ପାଉଁଶ ହୋଇଯିବଣି, ତମର ନଜର ନଥିବ । ଜାମାପଟା, ଗଞ୍ଜି ଚଡ଼ି କୋଉଠି ପଡ଼ିଥିବ, ହାତକୁ ନଦେଲେ ଚଳିବ ନାହିଁ ।

ସେ ଦିନରୁ ଝରକା କବାଟରେ ଚାପି ହେଇ ଝିଟିପିଟିଟା ମଲାଣି । ପଚିକି ଗନ୍ଧରେ ନାକ ଫାଟିଗଲା ପଛେ, ତାକୁ ତମେ କାଢ଼ିଲ ନାହିଁ । ମୁଁ ମଲା ଜୀବଟାକୁ ଛୁଇଁବି ନାହିଁ ବୋଲି କେତେ କାକୁତି ମିନତି ହେଲି । ଶେଷରେ ସେଟା ଶୁଖୁଆ ହେଇକି ଝୁଲୁଛି । ତମକୁ କ'ଣ ଦେଖାଯାଉ ନାହିଁ । ମୁଁ କାଢ଼ିଲେ ହିଁ ହବ, ନହେଲେ ନାହିଁ ।

ହେଇ ଶୁଣ, ମୁଁ କହି ଦଉଛି - ବହୁତ ହେଇଗଲାଣି । ଏଣିକି ତମ କଥା ତମେ ବୁଝ । ନିଜ ଲୁଗାପଟା ନିଜେ ସଫା କର । ମୁଁ ଆଉ ଏତେ କାମ କରି ପାରିବି ନାହିଁ ।

କୁନି ଝିଅଟା ଫ୍ରକ୍‌ର ଫିତାଟାକୁ ପାଟିରେ ପୂରାଇ କେତେବେଳେ ବାପାଙ୍କ

ମୁହଁକୁ ତ କେତେବେଳେ ମାଆଙ୍କ ମୁହଁକୁ ଚାହୁଁଥିଲା । ସେ କ'ଣ ବୁଝିଲା କେଜାଣି, କହି ପକାଇଲା - "ମା' ! ତମେ ବାପାଙ୍କୁ ଗାଳି ଦଉଛ କାହିଁକି ? ସିଏ ତ ତାଙ୍କ ପାଠ ପଢୁଛନ୍ତି।"

ଠୋ' କରି ଚାପୁଡ଼ାଏ କଷି ଦେଲା ମିନୁ, କୁନି ଝିଅ ଗାଲରେ । ଦୁଲ୍ କରି ସେ ତଳେ କଚାଡ଼ି ହେଇ ପଡ଼ିଲା ।

ଚମକି ପଡ଼ିଲା ବିଜନ । ତାକୁ ଲାଗିଲା ସିଧା ଚାପୁଡ଼ାଟା ଆସି ବସିଗଲା ତା'ଗାଲରେ । କଲମଟା ଛିଟିକି ପଡ଼ିଲା । କୁନିଝିଅ ଭେଁ କରି କାନ୍ଦି ଉଠିଲା । ଅନ୍ୟାୟ ଆଉ ଅତ୍ୟାଚାରକୁ ପ୍ରତିରୋଧ କରିବାର କ'ଣ ଏଇଟା ପୁରସ୍କାର ?

ବିଜନ ମୁଣ୍ଡଟେକି ଚାହିଁଲା - ବିଜୟ ଦର୍ପରେ ଠିଆ ହେଇଥିବା ମିନୁର ଆଖିରେ ନିଆଁ ଜଳୁଛି । ସେଇ ନିଆଁରେ ସେ ବି ଆକ୍ରାନ୍ତ ହେଇପଡ଼ିଲା । ହିତାହିତ ଜ୍ଞାନ ହରେଇ ବସିଲା । କଷିଦେଲା ଭୟଙ୍କର ଚାପୁଡ଼ାଟିଏ ମିନୁ ଗାଲରେ ।

ସମସ୍ତେ ନୀରବ ରହିଗଲେ, କିଛି ସମୟ ପାଇଁ । ପୁଣି କିଛି ଦିନ ପାଇଁ । ବିଜନ ଅନୁତାପ କଲା ।

'ଦୀର୍ଘଦିନ ଧରି ତ ମିନୁର ସବୁ ଅତ୍ୟାଚାର ସହି ଆସୁଛି । ସାମାନ୍ୟ ଘଟଣାଟିକୁ ନେଇ ମିନୁ ଗାଲରେ ମାଡ଼ ମାରିବା ଠିକ୍ ହେଇ ନାହିଁ ।'

ସେ ଅଫିସ ଫାଇଲଗୁଡ଼ିକୁ ବନ୍ଧାବନ୍ଧି କରିଦେଇ ଏବେ ଘରର ଜିନିଷ ପତ୍ର ସଜେଇ ପକାଉଛି । ବଗିଚାକୁ ଯାଇ ଗଛରେ ପାଣି ଦେଉଛି । ମିନୁକୁ ଖୁସି କରେଇବା ପାଇଁ ଆଉ ତା'ମନକୁ ବହଲେଇ ଦେବା ପାଇଁ; ଉପରେ ପଡ଼ି କେତେକଥା କହି ଚାଲିଛି । କିନ୍ତୁ ମିନୁର ରାଗ ସରୁନାହିଁ । ବରଂ ସେ ଛଡ଼ା ଛଡ଼ା ରହୁଛି । କୁନି ଝିଅର ପ୍ରଶ୍ନର ବି ଉତ୍ତର ଦେଉନାହିଁ । ବିଜନ ବଡ଼ ବ୍ୟସ୍ତ ହେଲା । ମିନୁକୁ କେମିତି ସ୍ୱାଭାବିକ କରେଇ ପାରିବ !

ମନେ ପଡ଼ିଗଲା, ମିନୁ ଖୁବ୍ ଭଲ ପାଏ, ମିଠାବୁଢ଼ାର ରସମଲେଇ ଖାଇବାକୁ । ଖାଇଲା ବେଳେ କହେ - "ବୁଢ଼ାଟା ଅମୃତ ଆଣି ଏଥିରେ ବୋଳିଛି ।"

ମିଠା ଖାଇବାକୁ ଖାଲି ସେ ଏକା ନୁହେଁ, କୁନିଝିଅ ବି ଭାରି ପସନ୍ଦ କରେ । ସେ ଦୁଇ ଜଣଙ୍କ ନାଆଁରେ ସିନା ମିଠା ଆସେ । କିନ୍ତୁ ସବୁଠୁ ଅଧିକ ବିଜନ ଭାଗରେ ପଡ଼େ । ଯେଉଁଦିନ ମିନୁର ମନ ଭଲ ନଥାଏ, ରସମଲେଇ ଆସିଗଲେ, ସବୁ ବଦଳିଯାଏ । ବିଜନ ଭାବେ - ଏ'ସବୁ ମିଠାବୁଢ଼ାର କରାମତି । ମିନୁ କହେ - "ମଲାଲୋକ ପରା ଉଠି ଆସିବ, ମିଠାବୁଢ଼ାର ରସମଲେଇ ପାଇଁ।"

ତରବର ହେଇ ସାଇକେଲଟା ବାହାର କଲା ବିଜନ । ଟିଫିନ୍ କେୟରିୟରଟା ଧରି ମିନୁକୁ ଶୁଣେଇଲା ପରି କହିଲା - "କୁନି ଝିଅ ! ତୁ ଏଇଠି ଥା' । ମୁଁ ଯାଉଛି ରସମଲେଇ ଆଣିବାକୁ । ମିଠାବୁଢ଼ାର ଅମୃତବୋଳା ରସମଲେଇ ।"

ସାଇକେଲରେ ବସି ବିଜନ ଭାବି ଚାଲିଛି, 'ଏମିତି ପାଟିତୁଣ୍ଡ କରୁକରୁ, ମିନୁକୁ ମୁଁ କେତେବେଳେ କେମିତି କଡ଼ା କଥା କହିପକାଏ । ଘଣ୍ଟାଏ ବେଳାଏ ସେ ରାଗରଖି ପୁଣି ଭୁଲିଯାଏ । ଏଥର ଭଳି ମାଡ଼ପିଟ କେବେ ହେଇ ନଥିଲା । ମିନୁର ପାଟିତୁଣ୍ଡ ସବୁବେଳେ ଶୁଣିଶୁଣି ବିଜନର ଏମିତି ଅଭ୍ୟାସ ହୋଇଗଲାଣି ଯେ, ଏବେ ତାକୁ ନୀରବତାଟା ହିଁ ଦଣ୍ଡ ଭଳି ଲାଗୁଛି । ଘର କରିଥିଲେ, ଏମିତି ତ ହୁଏ । ଛୁଆଟା ଅନୁଭବ କରିପାରୁଛି ଯେ ବାପାଙ୍କ ଉପରେ ମାଆଙ୍କର ଅତ୍ୟାଚାର ଚାଲିଛି ।

ନିଜେ ମିନୁ କ'ଣ ଏତିକି ଟିକେ ବୁଝିପାରୁ ନାହିଁ ? ସରଳତାର ଅର୍ଥ ନୁହେଁ - ଅକ୍ଷମତା । ସହିବାର ଅର୍ଥ ନୁହେଁ, ଜଣେ ଖାଲି ସହୁଥିବ । ସେ ଯାହା କରିଛି, ବରଂ ଠିକ୍ କରିଛି ।' ଏଇମିତି ଭାବୁ ଭାବୁ ବିଜନ ରସମଲେଇ ଦୋକାନ ପାଖରେ ପହଞ୍ଚିଗଲା ।

କହିଲା - "ସବୁଠୁ ଭଲ ରସମଲେଇ ସେ ଟିଫିନ୍ କେରିୟର୍‌ଟାରେ ଭର୍ତ୍ତି କରିଦିଅ । ହଁ, ସେଥିରେ ଟିକେ ଅମୃତ ବୋଳି ଦେଇଥିବ । ମିଠା ଦୋକାନୀଟା ବଡ଼ ରସିକିଆ ବୁଢ଼ା । ଲୋକ ଦେଖି ସେ କାରବାର କରେ । ସମସ୍ତଙ୍କ ସାଙ୍ଗରେ ତା'ର ହସ ମଜାକି । ରସମଲେଇକୁ ନେଇ ଗୀତଫାନ୍ଦି ରାତ୍ରୁଆ ଗଳାରେ ପଦେ ପଦେ ଗାଇଦିଏ । ଛୋଟ ପିଲା ତ ଏକଦମ୍ ଖୁସି ହେଇ ଯାଆନ୍ତି । ସ୍ତ୍ରୀଲୋକ ହେଇଥିଲେ. ପାଟିରେ କାନି ଦେଇ ଖୁବ୍ ହସନ୍ତି । ଆଖପାଖର ସବୁଲୋକ ତାକୁ 'ମିଠାବୁଢ଼ା' ବୋଲି ଜାଣନ୍ତି । କିଏ ମିଠା ଖାଉ ଥାଉ ବା ନଥାଉ, ସେ ବୁଢ଼ାର ମଜାଦାର ମିଠାକଥା ପଦକରେ ଖୁସି ହେଇଯାଏ ।

ମିଠାବୁଢ଼ା ଟିଫିନ୍‌ଟାକୁ ଧରି ଗପ ଆରମ୍ଭ କରିଦେଲା । "କିହୋ ବାବୁ ! ଆଜି କ'ଣ ଘରେ ଝଗଡ଼ା ଫଗଡ଼ା ହେଇଛି ନା' କ'ଣ ? ଏକାଥରେ ଟିଫିନ୍ ଫୁଲ୍ ?"

ବିଜନ ଚମକି ପଡ଼ିଲା । ମିଠାବୁଢ଼ାଟା ଯାଦୁ ଜାଣିଛି ନା' କ'ଣ ? ଆମ ଘର କଥା ଆଉ ମୋ ମନର କଥାକୁ ସେ କେମିତି ଜାଣିଲା ?

ତେବେ ବୁଢ଼ାର ରସମଲେଇ ହିଁ ଘରୋଇ ଝଗଡ଼ା ତୁଟେଇବାରେ ସାହାଯ୍ୟ କରେ । ହେଇଥିବ ଝଗଡ଼ା ଲାଗିବା ପରେ ମୋ ଭଳି ଆଉ କେହି କେହି ବୁଢ଼ାଠୁଁ ମିଠା ନେଉଥିବେ । ସେ କେମିତି ତା'ର ଅସଲ ସୁରାକ ପାଇ ଯାଇଛି । ବିଜନ ମନେ ମନେ ଭାବିଲା ।

ଟିଫିନ୍ କେରିୟର୍ ଫୁଲ୍ । ଘରେ ଆସି ପହଞ୍ଚି ବିଜନ ଯାହା ଦେଖିଲା - ସେ ତା'ଆଖିକୁ ବିଶ୍ୱାସ କରି ପାରିଲା ନାହିଁ । ଅର୍ଦ୍ଧଦଗ୍ଧ ଅବସ୍ଥାରେ ମିନୁକୁ ଲୋକମାନେ ଟେକି ଟେକି ପଦାକୁ ଆଣୁଛନ୍ତି ।

ସାଇକେଲ ସହିତ ଟିଫିନ୍ କେରିୟର ଦୁମ୍ କରି ତଳେ ପଡ଼ିଗଲା । ବିଜନ ଯାଇ କଚାଡ଼ି ହେଇପଡ଼ିଲା, ମିନୁ ଉପରେ । ମିନୁ ଦେହରେ କପଡ଼ା ନାହିଁ କି ଚମଡ଼ା ନାହିଁ । ତୁରନ୍ତ ତାକୁ ଡାକ୍ତରଖାନା ନିଆଗଲା ।

ପୋଲିସ ମୃତ୍ୟୁକାଳୀନ ଜମାନବନ୍ଦି ନେଲେ । ସେ କହିଲା - "ମୁଁ ମୋର ଭୁଲ ପାଇଁ ଏ'କାଣ୍ଡ କରିଛି । ପିମ୍ପୁଡ଼ି ଭେଳା କାନ୍ଥରେ ଚଢ଼ିଥିଲା । କୁନି ଝିଅକୁ ମାରିଲି । କିରୋସିନି ଢାଳି ହୋଇ ବାଥ୍‌ରୁମ୍‌ରେ ନିଆଁ ଲଗେଇ ଦେଲି । ବେଶ୍ ଏତିକି କହୁ କହୁ, ତା'ର ପ୍ରାଣବାୟୁ ଉଡ଼ିଗଲା ।

ଅସହାୟ ବିଜନ ବିଗତ ସ୍ମୃତିକୁ ଜାବୁଡ଼ି ଘରକୁ ଫେରିଲା । କିଏ ଜଣେ ଟିଫିନ୍ କେରିୟର୍‌ଟାକୁ ନେଇ ତାକୁ ଧରେଇ ଦେଲା । ସେ ତାକୁ କୁଣ୍ଢେଇ ପକେଇ ଚିପୁଡ଼ି ହେଇ କାନ୍ଦି କହିଲା - "ମିନୁ ତମରି ପାଇଁ ତ ରସମଲେଇ ଆଣିଛି, ଆଖିଖୋଲି ଦେଖ । ମିଠାବୁଢ଼ାର ଏ'ରସମଲେଇ । ଏଥିରେ ସେ ବହୁତ ମଜା ଭରି ଦେଇଛି । ତମେ କହୁଥିଲ ନା' ମିଠାବୁଢ଼ାର ରସମଲେଇରେ ଅମୃତ ମିଶିଥାଏ । ତାକୁ ଖାଇଲେ, ତମେ ନିଶ୍ଚୟ ଭଲ ହେଇଯିବ ।"

୦୦୦



# ହରିଣର ବାଘ ଶିକାର

ପୋଲିସ ଗାଡ଼ି ଦୁଆରେ ପହଞ୍ଚିବାର ଶବ୍ଦ ଶୁଣାଗଲାଣି, ତଥାପି ବିନୟ ନିର୍ଭୟରେ ଠିଆ ହେଇ ରହିଛି । ଯିଏ ଯେତେ ଅନୁରୋଧ କଲେ ବି ପିସ୍ତଲଟାକୁ ତଳକୁ ପକାଇ ଦେଉ ନାହିଁ କିମ୍ବା ନିଜ ଜାଗାରୁ ପାଦେ ବି ଘୁଞ୍ଚୁ ନାହିଁ । ମୋନାଲିସାର ଚେତା ଆସିଗଲାଣି। ତଥାପି ସେପଟ ଘରେ ତଳେ ପଡ଼ି କାନ୍ଦୁଛି । ପୋଲିସ ଯୋତାର କଚମଚ ଶବ୍ଦ ପାଖେଇ ଆସୁଥିଲା।

ଇନ୍ସପେକ୍ଟର କାନୁନ୍‌ଗୋ ବାବୁ ବିନୟ ହାତରୁ ଆଗ ପିସ୍ତଲଟାକୁ ଛଡ଼ାଇ ନେଲେ। ତା'ପରେ ରକ୍ତ ଜୁଡୁବୁଡୁ ହେଇଥିବା ଦୁଇଟା ଶବକୁ ନିରୀକ୍ଷଣ କରି ପଚାରିଲେ - "ଏ ଦୁଇଟା କ'ଣ ସେହି ବନା ଆଉ କାଳିଆର ଶବ ?"

ବିନୟ ତୁଣ୍ଡରେ ଭାଷା ନାହିଁ । ସେ ଏକପ୍ରକାର ମୂକ ପାଲଟି ଯାଇଛି । ମୁଣ୍ଡ ହଲେଇ ସମ୍ମତି ଜଣାଇଲା ।

ବିନୟକୁ ତୁରନ୍ତ ଥାନାକୁ ନିଆଗଲା। ଏଣେ ଶବ ଦୁଇଟାର ଫଟୋ ଉଠାଗଲା ବିଭିନ୍ନ ଦିଗରୁ । ଦୁଇ ଚାରିଜଣ ଗ୍ରାମବାସୀ ସାକ୍ଷୀ ପଡ଼ିଲେ । ସମସ୍ତେ ଚୁପ୍‌ଚାପ୍ ହେଉଥା'ନ୍ତି। ପୋଲିସକୁ ଦେଖିଲେ ପୁଣି ଚୁପ୍‌ଚାପ୍ ।

ମୋନାଲିସା ମୁଣ୍ଡପିଟି ବଡ଼ ପାଟିରେ କହୁଛି - "ଇଏ ସବୁ କ'ଣ ହେଇଗଲା। ଏତେ ବଡ଼ ପାପ ତମେ କାହିଁକି କଲ ? ମୁଁ ମରି ଯାଇଥିଲେ ବରଂ ଭଲ ହେଇଥାନ୍ତା। ହେ ଭଗବାନ ! ମୋ ଛାତିଟା ଫାଟିଯାଉ। ମୁଁ ଆଉ ସହିପାରୁ ନାହିଁ।"

ତାକୁ ସାନ୍ତ୍ୱନା ଦେବାକୁ ଗାଆଁଲୋକ ସାହସ କରୁ ନାହାନ୍ତି । ଦି'ଦିଟା ଲୋକକୁ ଘର ଭିତରେ ଗୁଳି କରି ଯେ ମାରି ସାରିଛି, ତା'ସ୍ତ୍ରୀ ପାଖକୁ ଯାଇ କିଏ ବା କାହିଁକି ଅଡୁଆରେ ପଡ଼ିବ।

ଥାନାର ହାଜତ ଭିତରେ ଚୁପ୍‌ଚାପ୍ ବସିଛି ବିନୟ। ପୋଲିସ ବାବୁ ଭାରି ବ୍ୟସ୍ତ। ଏସ.ପି. ସାହେବଙ୍କଠୁ ଫୋନ୍ ତ, ଏଣେ ଡି.ଆଇ.ଜି. ସାହେବଙ୍କ ଫୋନ୍ ଆସୁଛି । ଗାଡ଼ି ଯୋଗାଡ଼ କରି ଶବ ଆଣିବାର ବ୍ୟବସ୍ଥା ଚାଲିଛି। ବୁଢ଼ା କନେଷ୍ଟବଳ ଆସି ହାଜତର ତାଲାଟାକୁ ଆଉ ଥରେ ଟାଣି ଯାଞ୍ଚ କରିନେବା ଆଳରେ ବିନୟକୁ କଟମଟ କରି ଚାହୁଁଥାଏ ।

ବିନୟ ମୁଣ୍ଡ ତଳକୁ କଲା। ତା'ଆଖିରୁ ଦୁଇ ଟୋପା ଲୁହ ଗାଲ ଦେଇ ଗଡ଼ିଗଲା। ଏତେ ବେଳଯାଏ ସେ କେଉଁଠି ହଜିଯାଇଥିଲା କେଜାଣି। କିଛି କ୍ଷଣ ପୂର୍ବରୁ ଛାତିଟା ତା'ର ପଥର ହେଇ ଯାଇଥିଲା । ହାତ ମୁଠାଟା ସତେ ଯେମିତି ଲୁହାର ଚିମୁଟା ପାଲଟି ଯାଇଥିଲା । ଆଉ ଆଖିକୁ ଟିକେ ଓଦା କରିବା ପାଇଁ ଲୁହ ବୁନ୍ଦାଏ ବି ଆସୁ ନଥିଲା। ହଠାତ ସେ ଏ' କ'ଣ ଅନୁଭବ କରୁଛି ? ତା'ଛାତି ଭିତରଟା କୋରି ହେଇ ପଡୁଛି। କୋହ ଉଠୁଛି । ହାତ ମୁଠା ଗୁଡ଼ାକ ଭାରି ହୁଗୁଳା। ଯେମିତି ବି କୁଟା ଖଣ୍ଡେ ଉଠେଇ ପାରିବ କି ନାହିଁ । ଏଣେ ଆଖିରେ ତା'ର ଲୁହର ବନ୍ୟା ମାଡ଼ି ଆସୁଛି।

ଦୁଇ ପାପୁଲିରେ ସେ ଦୁଇ ଆଖିକୁ ଚାପି ଧରି ଗୋଟାଏ କୋଣକୁ ମୁହଁ କରି ବସି ରହିଲା ।

'ଆଜି ସେ ଯେଉଁ କାଳିଆ ଆଉ ବନାକୁ ଗୁଳି କରି ହତ୍ୟା କରିଛି, ସେ ଦୁହେଁ ଦିନେ ଥିଲେ; ତା'ର ଅତି ନିଜର । ଇଂଜିନିୟରିଂ ସ୍କୁଲରେ ପାଦ ଦେବା ଦିନ ହିଁ ସେ କାଳିଆ ଆଉ ବନାଙ୍କୁ ଭେଟିଥିଲା । ତାଙ୍କରିଠାରୁ ସେ ପ୍ରଥମେ ଅଭୟ ବାଣୀ ପାଇଥିଲା - "କେହି ଯଦି ତୋତେ ର୍ୟାଗିଂ କରେ, ତେବେ ତୁ ଆମ ଦି'ଜଣଙ୍କୁ କହିବୁ । ସିନିୟର ଜୁନିଅର ଆମେ ଜାଣୁନା । ବିଲକୁଲ୍ ସାଫ୍।" ଏତିକି କହି କାଳିଆ ଅଣ୍ଟାରୁ କାଢ଼ିଲା ସ୍ପ୍ରିଂ ଲଗା ଚକ୍ ଚକ୍ କରୁଥିବା ଛୁରୀ । ତା'ସୁଇଚ୍‌କୁ ଟିପି ଦେଖାଇ ଦେଲା । ଖଟ୍ କରି ଛୁରୀଟା ଲମ୍ବା ହେଇଗଲା ।

ପୁଣି ସେ କହି ଚାଲିଲା - "ଆଜିକାଲି ଯୁଗରେ ଏହାଛଡ଼ା ଇଂଜିନିୟରିଂ ପାଠ ପଢ଼ି ହେବ ନାହିଁ । ଏଇ ଛୁରୀ ହିଁ ଆମକୁ ର୍ୟାଗିଂରୁ ରକ୍ଷା କରିପାରିବ। ଅଧ୍ୟାପକଙ୍କ ଠାରୁ ଆରମ୍ଭ କରି ପ୍ରିନ୍ସପାଲ୍‌ଙ୍କ ପର୍ଯ୍ୟନ୍ତ। ପୁଣି ପରୀକ୍ଷା ବେଳେ ବି ଇଏ ବଢ଼ିଆ କାମରେ ଆସିବ । ବହୁତ ଚିନ୍ତା କରି ଗତକାଲି ଏ'ଛୁରୀଟାକୁ ମୁଁ କିଣିଛି । ଶଳା, ସିନିୟରଗିରି ଦେଖଉଛି, ର୍ୟାଗିଂ କରିବ । କରୁ । ତା'ର ଦିନେକୁ ମୋର ଦିନେ। ଏମିତି ଦିନେ ଅନ୍ଧାରିଆକି କାମ କରିଦେବି ଯେ, ଟୋକାର ଡେଡ୍ ବଡ଼ି ବି ମିଳିବ ନାହିଁ ।"

ତା'କଥା ସରିଛି କି ନାହିଁ, ବନା କହିଲା - "ମୁଁ ବି ଠିକ୍ କରିଛି, କେଉଁଠୁ ସୁବିଧା ଦେଖି ପିସ୍ତଲ ଖଣ୍ଡେ କିଣିବି । ତୋର କାହାରିକୁ ଡରିବା ଦରକାର ନାହିଁ । ଆମେ ଦି'ଜଣ ତୋ'ପାଖେ ପାଖେ ଅଛୁ । ଖାଲି ତୁ ଆମ ସାଙ୍ଗରେ ଟିକେ ବୁଲାବୁଲି କର । ତତେ ବି ସବୁ ଡରିବେ । ଆଉ ର୍ୟାଗିଂ କରିବ କୋଉ ଶଳା, ମୁଁ ଦେଖିବି । ହେଲା - ହାତ ମିଳା ଏଥର।"

ହାତ ମିଳେଇବାକୁ ବନା ବିନୟ ଆଡ଼କୁ ହାତ ବଢ଼େଇଲା । କିନ୍ତୁ ଏ'କଣ ତା'ର ହାତଟା ଉପରକୁ ଉଠୁ ନାହିଁ । ସେ ଅନୁଭବ କଲା - ତା'ର ଦେହ ଶିଥିଳ ହୋଇ ପଡୁଛି। ମୁଣ୍ଡଟା ବୁଲେଇ ଦେଉଛି । କଳିଜାଟା ବରଫ ହେଇ ଯାଉଛି । ପୃଥିବୀଟା ସତେ ଯେମିତି ତା'ଚାରିପଟରୁ ଖଣ୍ଡ ଖଣ୍ଡ ହେଇ ଭୁଷୁଡ଼ି ପଡୁଛି । ବିନୟ ଦୁମ୍ କରି ତଳେ ପଡ଼ିଗଲା ।

କାଳିଆ ଛୁରୀଟାକୁ ବନ୍ଦ କରି ଅଣ୍ଟାରେ ରଖିଦେଲା । ବନା ନଇଁ ପଡ଼ି ବିନୟକୁ ଉଠେଇଲା । ଦୁହେଁ ତାକୁ ଟେକି ନେଲେ, କ୍ୟାମ୍ପସ୍ ଭିତରେ ଥିବା

ଦେବଦାରୁ ଗଛ ମୂଳକୁ । ପାଣି ଆଉ ପବନ ବାଜିବାରୁ ସେ ଚେତା ଫେରି ପାଇଲା । ବନା ସାଇକେଲରେ ଯାଇ ବଜାରରୁ ଗରମ କ୍ଷୀର ଆଣି ପିଇବାକୁ ଦେଲା । କାଳିଆ କହିଲା - "କି ବେ ଶଳା ! ତୁ ମାଇଚିଆଟା କିରେ ? ଛୁରୀଟାକୁ ଦେଖି ତୋର ଚେତା ବୁଡ଼ି ଯାଉଛି । ତୁ ପୁଣି ଆମ ସାଙ୍ଗରେ ର୍‍ୟାଗିଂ ବିରୁଦ୍ଧରେ ଲଢ଼ିବୁ କେମିତି ?

- ଠିକ୍ ଅଛି। ଆଜି ସଞ୍ଜ ବେଳେ ତତେ ସେଥିପାଇଁ ଔଷଧ ଖାଇବାକୁ ପଡ଼ିବ । ଡୁ ୟୁ ଏଗ୍ରି ?"

ବନା ପଚାରିଲା - "ଆଚ୍ଛା ବିନୟ ! ତୁ ଏବେ ରହୁଛୁ କୋଉଠି ?"

- "ନାଇଁ, ଏଠି ଜଣେ ଗାଆଁର ମଉସାଙ୍କ ଘରେ ଦି'ଦିନ ପାଇଁ ରହୁଛି।"

- "ଠିକ୍ ଅଛି, ତୋ'ବେଡ଼ିଂପତ୍ର ଧରି କାଲି ଆସିବୁ । ଆମ ସାଙ୍ଗରେ ମେସ୍‌ରେ ରହିଯିବୁ" କାଳିଆ କହିଲା।

- "କିନ୍ତୁ ।"

- "କିନ୍ତୁ କ'ଣ ବେ ? ତୋ' କହିବା ଢଙ୍ଗରୁ ମୁଁ ତୋତେ ଜାଣି ସାରିଲିଣି। ଅର୍ଥର ଅଭାବ ତ ? ସେଥିପାଇଁ ତୋର ଚିନ୍ତା କରିବା ଦରକାର ନାହିଁ । ଟଙ୍କା କଥା ଆମେ ବୁଝିବୁ । ଆମ ପାଖରେ ଟଙ୍କାର ଅଭାବ ନାହିଁ। ଅଭାବ ଅଛି ସାଙ୍ଗର।" ବନା ବୁଝେଇ ଦେଲା।

ବିନୟ ନିଜକୁ ଅତ୍ୟନ୍ତ ଦୁର୍ବଳ ମନେ କରୁଥିଲା । କାଳିଆ କହିଲା - "ଏବେ ଯାଇ ତୋ'ବେଡ଼ିଂ ପତ୍ର ନେଇ ଆସିବୁ । ବନାର ତ ସାଇକେଲ ଅଛି। ଚାଲ ଯିବା ମୁଁ ତୋ' ମଉସାଙ୍କୁ ବୁଝେଇ ଦେବି । ମେସ୍‌ରେ ନରହିଲେ, ପାଠ ଠିକ୍ ଭାବରେ ମୋଟେ ପଢ଼ି ହବ ନାହିଁ । ଘରେ ଭାରି ଡିଷ୍ଟର୍ବ।"

ଚୁପ୍ ରହି ଭାବିଲା ବିନୟ - 'କାଳିଆ ଆଉ ବନା ଭଳି ଗୁଣ୍ଡା ଶ୍ରେଣୀର ପିଲାଙ୍କୁ ନେଇ ମଉସାଙ୍କ ଘରଟାକୁ ଦେଖାଇବା ଠିକ୍ ହେବ ନାହିଁ । ମଉସାଙ୍କ ଝିଅ ଏବେ କଲେଜରେ ପଢୁଛି। ସେମାନେ ଯ୍ୟାଙ୍କର ରଙ୍ଗଢଙ୍ଗ ଦେଖିଲେ, ମୋତେ ବି ଘୃଣା କରିବା ଆରମ୍ଭ କରିଦେବେ। ମାଉସୀଙ୍କର ବିଶ୍ୱାସ ତୁଟିଯିବ।'

- "କ'ଣ ବେ ! ଏତେ ସମୟ ଭାବି ଚାଲିଛୁ। ଚାଲ ଯିବା। ମାଉସୀଙ୍କ ହାତରୁ ପଖାଳ ଖାଇବା। ସେଇ ବାଟ ଦେଇ ମେସ୍‌କୁ ପଳେଇବା।" ବନା ତା'ସାଇକେଲ ଗଡ଼େଇ ଆଗେଇଲା।

ବେଳକୁ ବେଳ ବିପଦ ଘନେଇ ଆସୁଥିବାର ଲକ୍ଷ୍ୟ କରି ବିନୟ ବିକଳ ହୋଇ ଏଣିକି ତେଣିକି ଚାହୁଁଥାଏ। ମନେ ମନେ ବିପଦରୁ ଉଦ୍ଧାର ପାଇବା ପାଇଁ ଭଗବାନଙ୍କୁ ପ୍ରାର୍ଥନା କରୁଥାଏ । ଅନିଚ୍ଛା ସତ୍ତ୍ୱେ ସେ ତାଙ୍କ ସହିତ ଆଗକୁ ପାଦ ପକେଇ ଚାଲିଥାଏ।

ହଠାତ୍ ତା'ମୁଣ୍ଡରେ ଉପାୟଟିଏ ଆସି ପହଞ୍ଚିଗଲା। ସେ ଅଟକି ଯାଇ କହିଲା- "ଏବେ ତ ମଉସା ମାଉସୀ ଘରେ ନଥିବେ, ସେମାନେ କାହା ଘରକୁ ଯିବେ ବୋଲି କହୁଥିଲେ।

ଠିକ୍ ଅଛି ଚାଲ। ଏବେ ତମର ମେସ୍‌ଟା ମୋତେ ଦେଖେଇ ଦେବ। ମୁଁ ସୁବିଧା ଦେଖି ମଉସା-ମାଉସୀଙ୍କୁ ବୁଝେଇ ତମ ପାଖକୁ ଚାଲି ଆସିବି।"

କାଳିଆ ପକେଟରେ ହାତ ପୂରେଇ ପଚାରିଲା - "ଟଙ୍କା ପଇସା କିଛି ଅଛି ନା ଦୁଇ ଚାରିଶ ଦେବି, ରଖିଥିବୁ।"

- "ନାଇଁ । ଏବେ ତ କିଛି ଦରକାର ନାହିଁ। ଦରକାର ହେଲେ ମୁଁ ମାଗିନେବି।" ବିନୟ ଅତି ବିନୟରେ କହିଲା।

କାଳିଆ ଆଉ ବନାଙ୍କ ପଦାନୁସରଣ କରି ବିନୟ ମେସ୍ ବୁଲି ଦେଖିଲା। କାଳିଆ-ବନା ରହୁଥିବା ରୁମ୍‌ରେ ଆଉ ଗୋଟାଏ ଖଟ ଖାଲି ପଡ଼ିଛି। ସେ ଖଟ ଉପରେ ଯାବତୀୟ ଅଶ୍ଳୀଳ ଚିତ୍ର ଥିବା ପତ୍ରିକା କେତେ ଖଣ୍ଡ । ଖଟ ତଳେ ଖାଲି ମଦବୋତଲ କେତେଟା। ଛୋଟ ଟେପ୍ ରେକର୍ଡର ଖଣ୍ଡେ, ତା'ପାଖରେ ପୁଳାଏ ଖଣ୍ଡ ହିନ୍ଦୀ ଗୀତର କ୍ୟାସେଟ। ଥାକରେ କେଇ ଖଣ୍ଡ ବହିଖାତା ଶୋଭା ପାଉଛି। କାନ୍ଥରେ ବିଶ୍ୱ ସୁନ୍ଦରୀମାନଙ୍କର ବିଭିନ୍ନ ଭଙ୍ଗିର କ୍ୟାଲେଣ୍ଡର। ଘର ଚଟାଣରେ ବୋଧହୁଏ ଏମାନେ ରହିବା ଦିନରୁ ଝାଡୁ ବାଜି ନାହିଁ। ଘର କୋଣରେ ଅଣ୍ଡା ଖୋଳପା, ଫଳ ଚୋପା ଆଉ ଅନେକ ମଦ ବୋତଲ ଠିପିର ସମାବେଶ।

ବିନୟର ହଲକ ଶୁଖିଗଲା। ଦୋ'ଛକିରେ ପଡ଼ି ଡହଳ ବିକଳ ହେବା ବ୍ୟତୀତ କିଛି ଉପାୟ ନାହିଁ। କାଳିଆ ଦେଖାଇଦେଲା - "ଏ'ଖଟଟି ତୋ'ପାଇଁ ରିଜର୍ଭ ରହିଛି। ଯେତେ ଶୀଘ୍ର ପାରୁ, ଏଠିକି ଚାଲି ଆ'।"

ସବୁ ରକମର ମଜା ମାରିବୁ। ମାଲ ଚାଖିବୁ। ସବୁ ରକମର ମାଲ। ପଇସାପତ୍ର କଥା ଚିନ୍ତା କରନା। ଆରେ, ବାପା ମାଆ ଯାହା ଦେବେ, ତାଙ୍କ ହିସାବ ତାଙ୍କୁ ଦେଖେଇ ଦେଲେ ଗଲା। ଆମେ କୋଉଠୁ ଆଣିଲୁ, କେମିତି ଖର୍ଚ୍ଚ କଲୁ, ସେଥିରେ ତ ତାଙ୍କର ମୁଣ୍ଡ ଖେଳେଇବାର ଉଚିତ ନୁହଁ।"

ବନା କହିଲା - "ମୁଁ ତ ସେଇଥି ପାଇଁ ବାପାଙ୍କୁ କହି ଦେଇଛି, ମୋ ଚିନ୍ତା ତମେ କରିବ ନାହିଁ। ମୁଁ ଆଉ ଛୋଟ ପିଲା ହେଇ ରହିନାହିଁ। ବଞ୍ଚିବାର କୌଶଳ ମୋତେ ଜଣା। ପାରିବ ତ କିଛି ଟଙ୍କା ମନିଅର୍ଡର କରି ପଠେଇ ଦେବ। ନହେଲେ ତମେ ତମର ଅନ୍ୟ ପୁଅ-ଝିଅମାନଙ୍କ କଥା ଚିନ୍ତା କର। ମୁଁ ରୋଜଗାର କରି ନିଜେ ପଢ଼ିପାରିବି।"

ବୁଝିଲୁ ବିନୟ ! ତୋର ବାପା ନାହିଁ କି ମାଆ ନାହିଁ। ଏକପ୍ରକାର ଭଲ ହେଇଛି। ସେମାନେ ଥିଲେ, ଅଯଥାରେ ଖାଲି ମାନସିକ ଯନ୍ତ୍ରଣା ଦିଅନ୍ତି। ମୁକ୍ତ ଜୀବନର ମାନେ କ'ଣ, ସେମାନେ ବୁଝନ୍ତି ନାହିଁ। ଖାଲି ଉପଦେଶ, ଏଇଟା କରିବୁ ନାହିଁ, ସେଇଟା କରିବୁ ନାହିଁ। ସବୁ କାମରେ କଟକଣା। ସେମାନେ ହେଲେ କୂପ-ମଣ୍ଡୁକ। ଜୀବନଟା କ'ଣ ଖାଲି ନୀତି-ନିୟମ ଆଉ କଟକଣାରେ ବନ୍ଧା ହେଇ ରହିଥିବ ? ଆରେ ! ଯାହା ମିଳୁଛି, ଖାଅ-ପିଅ ମଉଜ କର। ଯେତେବେଳେ ନଥିବ ନାଇଁ।"

ବିନୟର ମେସ୍ ବୁଲା କାମ ସରିଗଲା। କାଳିଆ-ବନା ତାକୁ ପୁଣି ଥରେ ନିର୍ଭର ପ୍ରତିଶ୍ରୁତି ଦେଲେ - "ତୋତେ ଆମେ ମାଇଚିଆରୁ ହୀରୋ କରିଦେବୁ। ଖାଲି ତୁ ମେସ୍‌କୁ ଚାଲି ଆ'।"

କାଳିଆ-ବନାଙ୍କର ବ୍ୟବହାର, ଚାଲିଚଳନ ଆଉ ପିତାମାତାଙ୍କ ପ୍ରତି କଟୂକ୍ତି ତାକୁ ବହୁତ ଖରାପ ଲାଗିଲା। କ'ଣ କରିବ, କେମିତି ସେ ଦୁଇ ବର୍ଷ

କାଳ ଏ'ସ୍କୁଲରେ ପଢ଼ି ଇଂଜିନିୟରିଂ ଶେଷ କରିବ। ରହିବ କେମିତି, ଖାଇବ କୋଉଠି ? ତାକୁ ଏ'ବିପଦ ବେଳେ ପ୍ରକୃତରେ କିଏ ସାହାଯ୍ୟ କରି ପାରିବ ? କେବଳ ଭଗବାନ ହିଁ ଭରସା।

ତା'ର ମନେ ପଡ଼ିଗଲା।

ପିଲାଦିନେ ଜଣେ ସାଧୁ ମୋର କପାଳକୁ ଦେଖି କହିଥିଲେ - "ବିନୟର ବାଲ୍ୟକାଳ ଅତ୍ୟନ୍ତ ଦୁଃଖମୟ। ପିତାମାତାଙ୍କୁ ହରାଇପାରେ। କିନ୍ତୁ ସେ ସବୁ କ୍ଷେତ୍ରରେ ସଫଳତା ଲାଭ କରି ଜଣେ ଉଚ୍ଚପଦସ୍ଥ ଅଫିସର ହେବ। ତାକୁ ଲକ୍ଷେ ଲୋକ ଆଶ୍ରା କରି ବଞ୍ଚିବେ। ସୁନ୍ଦରୀ ପତ୍ନୀ, ଦୁଇଟି ପୁତ୍ର ସହିତ ସେ ଉଚ୍ଚ ଅଟ୍ଟାଳିକା ନିର୍ମାଣ କରି ଭୁବନେଶ୍ୱରରେ ବାସ କରିବ।"

- ବାପା ମାଆ ଦୁହେଁ, ସାଧୁଙ୍କର ସିଧାସଳଖ ଅପ୍ରିୟ ସତ୍ୟ, ଭବିଷ୍ୟତ ବାଣୀ ଶୁଣି ଆନନ୍ଦାଶ୍ରୁ ଗଡ଼େଇ ଦେଇଥିଲେ। ମାଆ କହିଥିଲେ - "ବିନୟଟି ଆମର ସବୁ କିଛି। ଦୁଃଖର ଦିନ ତ ବେଶି ଦିନ ରହେ ନାହିଁ। ଆମ ଅନ୍ତେ ସେ ଯଦି ନିଜେ ମଣିଷ ହେଇପାରିବ, ତେବେ ଆମର ଆଉ ଚିନ୍ତା କ'ଣ ? ସେ ଛୁଆଟା କେବଳ ଭଲରେ ରହୁ। ତୁମ ତୁଣ୍ଡ ସୁତୁଣ୍ଡ ହେଉ ବାବା।"

- ସାଧୁଙ୍କ ପାଦକୁ ଧରି ଅନୁନୟ ହୋଇ କହିଥିଲି - "ବାବା ! ମୋ ବାପା-ବୋଉଙ୍କୁ କେମିତି ହେଲେ, ବଞ୍ଚେଇ ରଖିଦିଅ। ବରଂ ଏଥିପାଇଁ ମୁଁ ସାରା ଜୀବନ ଦୁଃଖ ଭୋଗିବାକୁ ପ୍ରସ୍ତୁତ ଅଛି। ମୋ ସୁଖ-ପରିବର୍ତ୍ତେ ମୋ ବାପା-ମାଆଙ୍କ ଆୟୁଷ ଟିକେ ବଢ଼େଇ ଦିଅନ୍ତୁ ବାବା।"

ବାବା ଜଣକ ମୁଣ୍ଡ ହଲେଇ ନାସ୍ତିବାଚକ ସୂଚନା ଦେଇ କହିଥିଲେ - "ଏସବୁ ତ ପୂର୍ବ ନିର୍ଦ୍ଧାରିତ। ଯାହା ହେବାର ଅଛି, ତାହା ହିଁ ହେବ। ଅନ୍ୟମାନଙ୍କ ପରି ମୁଁ ଠକ ବାବାଜୀ ନୁହେଁ। କୁକୁଡ଼ା ବଳି, ମଦ, ପୂଜା ନାଆଁରେ ତମକୁ ମିଛ କହି କିଛି ଅର୍ଥ ଉପାର୍ଜନ କରିନେବି। ସେ କଥା ହେଇପାରିବ ନାହିଁ।"

ବାପା ଏଭଳି ବାବାଜୀ-ମାତାଜୀଙ୍କ କଥାକୁ ମୋଟେ ବିଶ୍ୱାସ କରନ୍ତି ନାହିଁ। ସେ ମୋ ମନରେ ଲାଗିଥିବା ଦାରୁଣ ଆଘାତକୁ ଠିକ୍ ଭାବରେ ଅନୁଭବ କରି ପାରିଥିଲେ। ମୋତେ ବୁଝାଇବା ପାଇଁ ପାଖକୁ ଟାଣି ନେଇ କହିଲେ - "ମୁଁ ପରା ତୋତେ ଧବଳେଶ୍ୱରବାବାଙ୍କୁ ସମର୍ପି ଦେଇଛି - ସେହି ତୋର ବାପା ମାଆ। ତୁ ମନରେ ସାହସ ଧରି ପାଠ ପଢ଼। ସବୁ ଠିକ୍ ହୋଇଯିବ। ଆମର ଆୟୁଷ ନପୂରି ଥିଲେ, କ'ଣ ଯମ ଆମ ପାଖକୁ ଆସି ପାରିବ ? ଏ'ସବୁ ଫାଲତୁ କଥାରେ ତୁ ମୁଣ୍ଡ ପୂରାନା।"

ବାବାଜୀଙ୍କ କଥାଟା କିନ୍ତୁ ମୋ ମୁଣ୍ଡରେ ପଶି ରହି ଯାଇଥିଲା। ଏଣୁ ସଞ୍ଜ ସକାଳେ ବାବା ଧବଳେଶ୍ୱରଙ୍କୁ ମୁଁ ମୁଣ୍ଡିଆ ମାରି କହେ - "ଭଗବାନ ! ମୋତେ ସୁଖ ନଦେଲେ ନାହିଁ; କିନ୍ତୁ ମୋ ବାପା-ମାଆଙ୍କୁ ତମେ ମୋ'ଠୁ ଛଡ଼େଇ ନିଅନା।"

୧ ୯ ୯ ୯ ମସିହା ଅକ୍ଟୋବର ମାସର ୨ ୯ ତାରିଖ। ଅନେକ ଦିନ ତଳର ଆତଙ୍କିତ ଆଶଙ୍କାକୁ ସତ୍ୟରେ ପରିଣତ କରିଦେଲା ମହାବାତ୍ୟା। ବୋଉକୁ ଉଦ୍ଧାର କରିବାକୁ ଯାଇ ବାପା ବି ଭାସିଗଲେ। ଭାସି ଯାଉ ଯାଉ ବାପା ଚିତ୍କାର

କରି ମୋତେ କହିଲେ - "ତୁ ସେଇଠି ଥା। ବାବାଙ୍କ ନାମ ଛାଡ଼ିବୁ ନାହିଁ। ସେହି ଦିନଠାରୁ ମୁଁ ସତରେ ଭାଙ୍ଗି ପଡ଼ିଥିଲି।

କିନ୍ତୁ +୨ ବିଜ୍ଞାନର ଛାତ୍ର ହିସାବରେ ଏଣ୍ଟ୍ରାନ୍ସ ପରୀକ୍ଷା ଦେଇଥିଲି। ଏଣେ ଡିପ୍ଲୋମା ପାଇଁ ମଧ୍ୟ କଲ୍ ଲେଟର ପାଇଥିଲି। ଫ୍ରି-ସିଟ୍ ପାଇଗଲି। ଇଂଜିନିୟରିଂ ପଢ଼ିବାକୁ ଭୁବନେଶ୍ୱର ଯିବାକୁ ପଡ଼ିବ। ଫ୍ରି ହେଲେ କ'ଣ ହେବ, ତଥାପି ଅନେକ ଟଙ୍କା ଦରକାର।

ଭୁବନେଶ୍ୱର ଚାଲି ଆସିଲି। ନିରାକାର ମଉସାଙ୍କ ପାଖରେ ପହଞ୍ଚିଲି। ନିରାକାର ମଉସା ବାପାଙ୍କର ବନ୍ଧୁ। ଆମ ଗାଁ ପାଖରେ ତାଙ୍କ ଘର। ସେ ସରକାରୀ ପ୍ରେସରେ କିରାଣୀ ଚାକିରି କରନ୍ତି। ତାଙ୍କର ପୁଅ ବାହାରେ ମେଡ଼ିକାଲରେ ଆଡମିସନ ହେଇଛି। ତା'ର ଟଙ୍କା ଦରକାର। ଏତେ ଛୋଟ ଘର, ବଢ଼ିଲା ଝିଅଟା ଏ' ବର୍ଷ କଲେଜକୁ ଯାଉଛି। ଏତେ କମ୍ ଦରମାରେ କେମିତି ସେ ଚଳନ୍ତି, ତାଙ୍କୁ ହିଁ ଜଣା।

ତଥାପି ମୋ କଥା ସବୁ ଶୁଣି ସାରି ମୋତେ ସାହସ ଦେଲେ, "ତୁ ନିଶ୍ଚୟ ଇଂଜିନିୟରିଂ ପଢ଼ିବୁ। କିନ୍ତୁ କମ୍ ଖର୍ଚ୍ଚ ଆଉ କମ୍ ଦିନରେ ଡିପ୍ଲୋମାଟା ଆଗ କରିପକା। ପରେ ବ୍ୟାଙ୍କରୁ ଷ୍ଟଡି ଲୋନ୍ ଆଣି ତୋ' ନାଆଁ ଇଂଜିନିୟରିଂ କଲେଜରେ ଲେଖାଇ ଦେବି। ଚାକିରି କଲେ, ସେ ଲୋନ୍ ଶୁଝିଦେବୁ। ପାରିବୁ ଯଦି କେତୋଟି ହାଇସ୍କୁଲ ପିଲାଙ୍କୁ ଟିଉସନ୍ ଧରିଦେ, ତୋ' ଖର୍ଚ୍ଚ ଉଠିଯିବ। କିନ୍ତୁ ମୋ ଘରେ ତ ଜାଗା ନାହିଁ। ଏମିତି ଦିନେ ଦି'ଦିନ ତୁ ମୋ ପାଖରେ ଶୋଇ ପଡ଼ିବୁ। କିନ୍ତୁ କୌଣସି ମେସ୍ କି ହୋଟେଲର ବ୍ୟବସ୍ଥା କରିବାକୁ ପଡ଼ିବ। ଆଜିକାଲି ହଷ୍ଟେଲଗୁଡ଼ାକ ମୋଟେ ନିରାପଦ ଜାଗା ନୁହଁ। ଖାଲି ମଦୁଆ, ବାଲୁଙ୍ଗା, ଛତରା ଟୋକାଙ୍କର ଭିଡ଼ । ମାଡ଼ପିଟ, ଗଣ୍ଡଗୋଳ, ର୍ୟାଗିଂ ଚାଲିଥିବ ଯେ ଚାଲିଥିବ।"

ମଉସାଙ୍କ ପରାମର୍ଶ ଆଉ ସାହାଯ୍ୟ ପାଇ, ମୁଁ ନାଆଁ ଲେଖେଇଲି - ଭୁବନେଶ୍ୱରର ଏକ ନାମକରା ଇଂଜିନିୟରିଂ ସ୍କୁଲରେ। ର୍ୟାଗିଂ ଭୟରେ କିଛି ଦିନ ଅନୁପସ୍ଥିତ ରହିଲି। ତଥାପି ତ ପଢ଼ିବାକୁ ପଡ଼ିବ। ଭୟ ଆଉ ଆତଙ୍କିତ ଅବସ୍ଥାରେ ସ୍କୁଲ କ୍ୟାମ୍ପସରେ ପାଦ ଦେଉ ଦେଉ, କାଳିଆ ଆଉ ବନା ମୋତେ ଭେଟି ଯାଇଥିଲେ।

ମୋର ବାୟୋଡାଟା, ଆର୍ଥିକ ଅବସ୍ଥା, ରୁଚି ଏବଂ ଆହୁରି ଅନେକ କଥା, ସେମାନେ ମୋ ଠାରୁ ଆଗ ସଂଗ୍ରହ କରିନେଲେ। ମୋ ବାପା ମାଆ ମହାବାତ୍ୟାରେ ଭାସିଯିବା ଭଳି ଦୁଃଖଦ ଘଟଣା ତାଙ୍କ ମନରେ ସାମାନ୍ୟତମ ଶୋଚନା ଆଣି ଦେଇ ନଥିଲା। ବରଂ ସେମାନେ ତାଙ୍କର ବଡ଼ପଣିଆ ଦେଖାଇ ଡୋନେସନ୍ ସିଟ୍‌ରେ ଆସିଛନ୍ତି ବୋଲି ଗର୍ବ ଅନୁଭବ କଲେ।"

ଏହା ଭିତରେ ମୁଁ ଆସି ମଉସାଙ୍କର ଘର ଦାଣ୍ଡ ଦୁଆରେ ପହଞ୍ଚି ସାରିଲିଣି। ତାଙ୍କ ଝିଅ ମୋନା ପଚାରିଲା - "ଭାଇନା! ଏତେବେଳ ଯାଏ କୁଆଡ଼େ ଯାଇଥିଲ, ବାପା ତମକୁ ଖୋଜିବାକୁ ଯାଇଛନ୍ତି।

ଦୁଇ ଦିନ ହେଲାଣି ମୁଁ ଆସି ମଉସାଙ୍କ ଘରେ ରହିଲିଣି। ଆଗରୁ ଦି'ଥର ମାଉସୀଙ୍କ ସାଙ୍ଗରେ କଥା ହେଇ ଯାଇଛି। ମୋନା ବୋଲି ଝିଅଟି ତାଙ୍କର +୨

ପଢୁଛି ବୋଲି ଶୁଣିଥିଲି। କିନ୍ତୁ ମୋନାକୁ ସେତେବେଳେ ଯାଏ, ଭଲ କରି ଦେଖି ନଥିଲି। ବେଶ୍ ସ୍ମାର୍ଟ ଝିଅଟିଏ ତ। ଖଣ୍ଡାଧାର ପରି ନାକ, ଗୋରା ତକ ତକ ଦେହକୁ ରେଶମୀ ଚୁଟି । କଳା ସାଲୁଆର ସାଙ୍ଗକୁ ହଳଦିଆ ଚୁନିଟା ତାକୁ ବେଶ୍ ମାନୁଛି।

ଅନ୍ୟମନସ୍କ ହେଇଗଲି। ମୁଣ୍ଡ ତଳକୁ କରି ତାଙ୍କ ଘର ଭିତରକୁ ପଶିଗଲି। ମନେ ମନେ ଭାବିଲି - ପର ଝିଅକୁ ଏତେ ନିରିଖେଇ ଦେଖିବା ମୋର ଉଚିତ ନଥିଲା। ଆଶ୍ରିତ ହୋଇ ଆଶ୍ରୟଦାତାଙ୍କ ସହିତ ବିଶ୍ୱାସଘାତକ କରିବା ଠିକ୍ ହେଲା ନାହିଁ। ଆଖି ଦୁଇଟାକୁ ସଂଯତ ହେବାକୁ ପରାମର୍ଶ ଦେଲି। 'ଏମିତି ଭୁଲ ସେ ଆଉ କେବେ କରିବ ନାହିଁ।'

ମାଉସୀ ଆସନ ପକେଇ ଦେଇ ଭାତ ବାଢ଼ିବାକୁ ରୋଷେଇ ଘର ଭିତରକୁ ଚାଲିଗଲେ। ମୋନା ପାଣି ଆଣି ଥୋଇଲା। ଭାତ ତରକାରୀ, ଭଜା, ଡାଲି, ପାମ୍ପଡ଼ ସଜେଇ ଦେଉ ମାଉସୀ ପଚାରିଲେ, "କିରେ ବିନୟ! ଆଜି କ'ଣ ସବୁ ପଢ଼ା ହେଲା ? କେହି ତତେ ର୍ୟାଗିଂ କଲେ କି ?"

ବିନୟ ଭାତ ମୁଠାଏ ପାଟିରେ ପୂରାଇ କହିଲା - "ମାଉସୀ! ଗୋଟାଏ ମେସ୍ ଦେଖିବାକୁ ଯାଇଥିଲି।"

- "କ'ଣ ମନକୁ ପାଇଲା ?"

- "ନାଇଁ ମାଉସୀ, ଦୁଇଟା ମଦୁଆ ଆଉ ଗୁଣ୍ଡା ପିଲା ସେ ମେସ୍‌ରେ ରହୁଛନ୍ତି। ବହୁତ ଡର ଲାଗିଲା।"

- "ଲୋ, ମା ! ପିଲାଗୁଡ଼ା ଇଂଜିନିୟରିଂ ସ୍କୁଲ ଦୁଆର ନମାଡୁଣୁ, ମଦୁଆ ହେଇଗଲୁଣି । ସେଗୁଡ଼ାକ ଆଉ କି ପାଠ ପଢ଼ିବେ ?"

ମାଉଁସୀ ଛାନିଆଁ ହେଇ କହି ପକାଇଲେ।

ମଉସା ଘରକୁ ଫେରି ଆସି ମୋନାଠାରୁ ସବୁକଥା ବୁଝିନେଲେ। ମୋ ପାଖକୁ ଆସି କହିଲେ - "ତୋର ସେ ମେସ୍‌କୁ ଯିବା ଦରକାର ନାହିଁ। ଏଇ ଘରେ ତୁ ରହି ମନଯୋଗ ଦେଇ ପାଠପଢ଼। ମୋର ଗୋଟାଏ ପୁଅ ଥିଲା, ତୁ ଆଉ ଗୋଟାଏ ପୁଅ ହେଇ ରହିଲୁ।"

"କିନ୍ତୁ, ସେମାନେ ଆସି ମୋତେ ଯଦି ଜବରଦସ୍ତ ମେସ୍‌କୁ ନେଇଯାଆନ୍ତି ?" ମୁଁ ପଚାରିଦେଲି।

- "ମୁଁ ସେ କଥା ବୁଝିବି । କିନ୍ତୁ ତୁ ସେମାନଙ୍କୁ ଆଭଏଡ଼ କରିବୁ। ତାଙ୍କ କଥାରେ କଥା କହିବୁ ନାହିଁ କି, ତାଙ୍କଠୁ କୌଣସି ପ୍ରକାରେ ସାହାଯ୍ୟ ଗ୍ରହଣ କରିବୁ ନାହିଁ। ତୋର ଯାହା ଦରକାର ମୋତେ କହିବୁ। ହେଲା !"

- ମଉସାଙ୍କ କଥା ଶୁଣି ତାଙ୍କୁ ହଁ ମାରି ପ୍ରତିଶ୍ରୁତି ଦେଇପାରୁ ନଥିଲି। ମୋ ଆଖି ଆଗରେ ନାଚି ଯାଉଥିଲା କାଳିଆ-ବନାଙ୍କର ସହାୟତାର ହାତ, ଏଣେ ମଉସାଙ୍କ ଘରର ଆର୍ଥିକ ପରିସ୍ଥିତି। ମନେ ମନେ ଭାବୁଥିଲି, ମଉସା ସିନା ତାଙ୍କ ଘରେ ଥାଇ ସୁରକ୍ଷା ଦେବେ। କିନ୍ତୁ ସ୍କୁଲ କ୍ୟାମ୍ପସ୍ ଛୁଇଁଲେ ତ, କାଳିଆ-ବନାଙ୍କ ବ୍ୟତୀତ ସେଠି ନିଜର ବୋଲି କେହି ନଥିବେ।

ମୋ ମୁଣ୍ଡ କେମିତି ଗଡ଼ବଡ଼ ହେଇଗଲା। ବାବାଙ୍କ ନାମ ସ୍ମରଣ କରି ଟିକେ ଆଶ୍ୱସ୍ତି ଅନୁଭବ କଲି।

ଖାଇବା ଶେଷରେ ମାଉସୀ କହିଲେ - "ଖବର ଆସିଛି ଗାଁରେ ବାତ୍ୟା କ୍ୟାମ୍ପ ପଡ଼ିଛି। ମହାବାତ୍ୟା କ୍ଷତିପୂରଣ କାମରେ ତତେ ଦି'ଦିନ ଭିତରେ ଗାଆଁକୁ ଯିବାକୁ ପଡ଼ିବ। କାଲି ସ୍କୁଲକୁ ଯାଇ ପ୍ରିନ୍ସପାଲଙ୍କୁ ଦରଖାସ୍ତ ଖଣ୍ଡେ ଦେଇ ଗାଆଁକୁ ଚାଲିଯା'। ଯଦି କିଛି ଅର୍ଥ ମିଳିଯାଏ, ତୋ'ପାଠପଢ଼ା କାମରେ ତ ଲାଗି ପାରିବ।"

ତା'ପରଦିନ କ୍ୟାମ୍ପସ୍‌ରେ ପୁଣି କାଳିଆ-ବନାଙ୍କ ସହିତ ମୋର ଭେଟ ହେଲା। ସେମାନଙ୍କୁ ସିଧାସଳଖ ମେସ୍ ଯିବାକୁ ମନା କରି ପାରିଲି ନାହିଁ । କହିଲି - "ବାତ୍ୟା କ୍ଷତିପୂରଣ କାମରେ ମୁଁ ଗାଆଁକୁ ଯିବି, ସେଇଠୁ ଫେରିଲେ ଯାହା କିଛି।"

କାଳିଆ ପୁଣି ଥରେ ଚେତେଇ ଦେଲା, "ଶୁଣ ବେ ମାଇଚିଆ। ତୁ ଗାଆଁରୁ ଫେରିଲେ, ସିଧା ମେସ୍‌କୁ ଆସିବୁ। ତତେ ମୁଁ ଆମ ଗ୍ରୁପ୍‌ରେ ରଖି ସାରିଛି, ହଁ ଆଉ ଗୋଟାଏ ଗୁଡ୍ ନ୍ୟୁଜ୍ । ବନା ଗୋଟାଏ ଦାମି ପିସ୍ତଲ ଚୋରାରେ ପାଇଯାଇଛି। ଏବେ ଆମର କାମ ଧୁମ୍‌ଧାମ୍‌ରେ ଚାଲିବ। କିନ୍ତୁ ତୋ ଛଡ଼ା ଏ'ଖବର ଯେମିତି ଆଉ କେହି ନ ଜାଣନ୍ତି। ବି କେୟାରଫୁଲ୍।

ଫେରିବା ପୂର୍ବରୁ ବନା ମୋ ପାଖକୁ ଲାଗି ଆସି କହିଲା - "ତୋ ପାଇଁ ଆଉ ଗୋଟାଏ ଗୁଡ୍ ନ୍ୟୁଜ୍। ଆଜି ରାତିରେ ସେହି ସିନିୟର ପିଲାଟାକୁ ହାଇଜାକ୍ କରାଯିବ। ସେଇମ' ଯିଏ ତତେ ଗତକାଲି ର୍ୟାଗିଂ କରିବାକୁ ଯାଉଥିବା ବେଳେ ଆମ ହାତରେ ଧରା ପଡ଼ି ଯାଇଥିଲା। ତା'ର ପତ୍ତା ଆମକୁ ମିଳିଯାଇଛି। ଅଲ୍ ଦି ବେଷ୍ଟ। ଯା' ଶୀଘ୍ର ଗାଆଁରୁ ଫେରିଆ।"

କାଳିଆ-ବନା ଚାଲିଗଲେ। ଅସହାୟ ଅବସ୍ଥାରେ ମୁଁ ପୁଣି ଦୋ'ଛକିରେ ପଡ଼ିଗଲି। ଏ'ସ୍କୁଲରେ ମୁଁ କେମିତି ପାଠ ପଢ଼ିବି ? କେମିତି ବଞ୍ଚି ରହିବି, ସିଏ ହେଲାଣି ମୂଳ କଥା।

ଗତ ମହାବାତ୍ୟା ଠାରୁ ଇଂଜିନିୟରିଂ ସ୍କୁଲ ମହାବାତ୍ୟାର ପ୍ରକୋପ ଆହୁରି ଅଧିକ ଯନ୍ତ୍ରଣାଦାୟକ। ଛତିଶ ଘଣ୍ଟାରେ ତ ମହାବାତ୍ୟା ଶେଷ ହୋଇ ଯାଇଥିଲା। କିନ୍ତୁ ଏଠିତ ତାକୁ ଦି'ବର୍ଷର ମହାବାତ୍ୟା ସହିବାକୁ ପଡ଼ିବ। ମହାବାତ୍ୟାରେ ଥିଲା, କେବଳ ପାଣିର ଲହଡ଼ି। ଏଠି କିନ୍ତୁ ଛୁରୀ-ବନ୍ଧୁକର ଭୟଙ୍କର ଆତଙ୍କ। ର୍ୟାଗିଂ, ମଦ୍ୟପାନ, ହାଇଜାକ୍, ମର୍ଡର, ରେପ୍, ଗୁଣ୍ଡାଗିରି । ଏତେ ଗୁଡ଼ାଏ ବିପଦର ଲହଡ଼ିକୁ କ'ଣ ଏ'ଦେହ ମନ ସହି ପାରିବ!!!

କିନ୍ତୁ ଉପାୟ ନାହିଁ।

ଡିପାର୍ଟମେଣ୍ଟରେ ଦରଖାସ୍ତ ଖଣ୍ଡେ ଦେଇ ସାରି ଢୁଳେଇ ଢୁଳେଇ ଚାଲିଥାଏ। ମଉସାଙ୍କ ଘରେ ପହଞ୍ଚିଲା ବେଳକୁ, ଗତକାଲି ପରି ଢେର ଡେରି ହୋଇ ଯାଇଥିଲା। ମୋନା ମୋତେ ବହୁତ ଦୂରରୁ ଲକ୍ଷ୍ୟ କରି, ଅନୁମାନ କରି ନେଇଛି, ଆଜି ମୋ ଉପରେ ଭଲ କରି ର୍ୟାଗିଂ ହୋଇଛି। ସେ ସିଧା ଦୌଡ଼ି ଆସି ମୋ ଦୁଇ ହାତକୁ ଧରି ପକାଇ ଆଖି ଦୁଇଟାକୁ ଚାହିଁଲା। ପଚାରିଲା - "କ'ଣ ହୋଇଛି ଭାଇନା ? ଆଖି ଦି'ଟା ଲାଲ ପଡ଼ିଛି ଯେ, ଦେହ ବି ଶୀତଳ ଲାଗୁଛି। ତମକୁ କ'ଣ ସେମାନେ ମାଡ଼ ଦେଲେ କି ? ତମେ ଏତେ ବେଳଯାଏ ଥିଲ କୋଉଠି ? ? ଆଜି ବହୁତ କାନ୍ଦିଛ ନା ?"

ମୁଣ୍ଡ ଟେକି ମୁଁ ମୋନାକୁ ଚାହିଁ ପାରିଲି ନାହିଁ। ଅନୁଭବ କରି ପାରୁଥିଲି, ମୋନା ହାତର ତାପ ଠାରୁ ମୋ ହାତର ତାପ ବହୁତ କମ୍।

ଆଜି ମୁଁ ଯେଉଁ ଆଘାତ ପାଇଛି, ସିଏ ବିଧା, ଗୋଇଠା ମାଡ଼ଠାରୁ ଯଥେଷ୍ଟ ଅଧିକ ପୀଡ଼ାଦାୟକ । ଆଖିରୁ ସିନା ଲୁହ ଗଡ଼େଇ କାନ୍ଦି ନାହିଁ, କିନ୍ତୁ ହୃଦୟ ଫଟେଇ ଅନେକ କାନ୍ଦି ସାରିଛି। କେମିତି ମୋନାକୁ ମିଛ କହିବି ? କେବଳ ନୀରବ ଭାଷାରେ ସମ୍ମତି ଜଣେଇବା ଛଡ଼ା ଅନ୍ୟ କିଛି ଉପାୟ ନଥିଲା ମୋ ପାଖରେ।

ମୋନା ମୋ ହାତକୁ ଧରି ଘର ଭିତରକୁ ନେଇଗଲା। ଗାମୁଛା ଆଣି ମୁହଁ ପୋଛିବାକୁ ଦେଲା। ଫ୍ୟାନ୍ ଅନ୍ କରିଦେଲା। ମାଉସୀ ଭାତ ବାଢ଼ିଦେଇ ପାଖରେ ବସି ପଡ଼ିଲେ। ଅନୁଭବ କରୁଥିଲି, ନିଜ ଘରେ ବଡ଼ ସୁରକ୍ଷିତ ଅବସ୍ଥାରେ ମୋ ବୋଉ ପାଖରେ ବସି ଖାଉଛି।

ମଉସାଙ୍କ ଠାରୁ ବିଦାୟ ନେଇ ମୁଁ ଗାଆଁକୁ ଯାଇଥାଏ। ତା'ପରଦିନ ଖବର କାଗଜରେ ଦେଖିଲି, ଆମ ଇଂଜିନିୟରିଂ ସ୍କୁଲ ଖବର ଆଗ ପୃଷ୍ଠାରେ ଛପାଯାଇଛି।

"ଅଜ୍ଞାତ ଆତତାୟୀ ଗୁଳି ଚୋଟରେ ଦ୍ୱିତୀୟ ବର୍ଷର ଦୁଇ ଜଣ ଛାତ୍ର ନିହତ। ଆତତାୟୀମାନେ ଧରା ପଡ଼ିନାହାନ୍ତି। ଅନୁମାନ କରାଯାଏ, ର୍ୟାଗିଂ ଘଟଣାକୁ କେନ୍ଦ୍ର କରି ଅଣଛାତ୍ରମାନେ ଏଭଳି ଅଭାବନୀୟ ଘଟଣା ଘଟାଇଛନ୍ତି। ପୋଲିସର ଅନୁସନ୍ଧାନ ଚାଲିଛି। ଆଇନ ଶୃଙ୍ଖଳା ପରିସ୍ଥିତିକୁ ଦୃଷ୍ଟିରେ ରଖି ଅନିର୍ଦ୍ଦିଷ୍ଟ କାଳ ପାଇଁ ସ୍କୁଲକୁ ବନ୍ଦ କରି ଦିଆଯାଇଛି।"

ଖବର କାଗଜଟିକୁ ଭାଙ୍ଗି ମୋ ପାଖରେ ଠିଆ ହେଇଥିବା ଲୋକ ହାତକୁ ବଢ଼େଇ ଦେଲି।

ବାତ୍ୟା ବିଧ୍ୱସ୍ତ ସ୍ତୁପ ଉପରେ ବସି ପଡ଼ିଲି। ମୁଁ ତ ସବୁ କଥା ଜାଣିଛି, ଆଉ ଅଧିକ ପଢ଼ିବି କ'ଣ ? ଖୁନୀଙ୍କୁ ଚିହ୍ନେ, ମୃତ ଛାତ୍ର ଦୁଇ ଜଣଙ୍କୁ ମଧ୍ୟ ଜାଣେ। ହତ୍ୟାକାଣ୍ଡର କାରଣ ଆଉ ପରିଣାମ ସଂପର୍କରେ ମଧ୍ୟ ମୁଁ ଅବଗତ। କିନ୍ତୁ କାଳିଆ-ବନା ଧରା ପଡ଼ିଗଲେ, ନିଶ୍ଚୟ ମୁଁ ବି ହାଜତକୁ ଯିବି। ବିଚାର ଚାଲୁ ଚାଲୁ କେତେ ବର୍ଷ ଚାଲିଯିବ, ତା'ର ହିସାବ ନାହିଁ। ଇଂଜିନିୟରିଂ ପାଠପଢ଼ା ମୋର ଏଇଠୁ ଶେଷ ହେଇଯିବ। ବିଚାର ଶେଷରେ ବିଚାରପତି କାହା ପାଇଁ କି ଦଣ୍ଡ ଦେବେ କିଏ କହି ପାରିବ ? ତେବେ ମୋର ଜୀବନର ଗତିପଥରେ ଏଇଠି ହିଁ ପୂର୍ଣ୍ଣଛେଦ ପଡ଼ିଲା। ଏତେ କଥା ଭାବୁ ଭାବୁ ମୁଁ ମ୍ରିୟମାଣ ହେଇ ପଡୁଥାଏ।

ପୁଣି ମୋ ମନେ ପଡ଼ିଗଲା - ସାଧୁବାବା ଜଣକ କହିଥିଲେ, "ପିଲାଟା ସିନା ମାତା-ପିତାଙ୍କୁ ହରେଇବ, କିନ୍ତୁ ସେ ପାଠପଢ଼ି ବହୁତ ଉପରକୁ ଯାଇପାରିବ।"

ପୁଣି କହିଥିଲେ - "ଯାହା ହେବାର ଅଛି, ସବୁ ପୂର୍ବ ନିର୍ଦ୍ଧାରିତ। ତାଙ୍କର ଭବିଷ୍ୟତ ବାଣୀ ଅନୁସାରେ ହିଁ ମୋର ବାପା-ମାଆ ଦୁଇ ଜଣଯାକ ଆର ପାରିକୁ ଚାଲିଗଲେ। ଏବେ ମୋ ପାଠପଢ଼ା ବେଳକୁ ଏତେ ବାଧା-ଏତେ ବିପଦ ଆସୁଛି କାହିଁକି ? ତେବେ କ'ଣ ତାଙ୍କର ଗଣନାରେ କିଛି ତ୍ରୁଟି ରହିଗଲା କି ?"

ଭଗବାନ ଯାହା କରନ୍ତି, ପ୍ରାଣୀର ମଙ୍ଗଳ ପାଇଁ। ହତ୍ୟାକାଣ୍ଡ ଘଟଣା ଦିନ ହିଁ ମୁଁ ଗାଆଁକୁ ଚାଲି ଆସିଛି। ନହେଲେ ସେମାନେ ନିଶ୍ଚୟ ମୋତେ ଜବରଦସ୍ତ

ସାଙ୍ଗରେ ନେଇ ଯାଇଥା'ନ୍ତେ। କେଡ଼େ ଭୟଙ୍କର ! ଏଇ କାଳିଆ ଆଉ ବନା ଦୁଇଜଣ। ଏମାନେ ବଡ଼ ହେଲେ କ'ଣ ନା' କ'ଣ କରିଦେବେ। ଏମାନଙ୍କ ପାଇଁ ସ୍କୁଲର ସୁନାମ ତ ଯିବ, ମେଧାବୀ ଛାତ୍ରମାନଙ୍କର କେରିୟର ବି ଖରାପ ହୋଇଯିବ। କେତେ ଜଣ ନିରୀହ ଛାତ୍ର ଜୀବନ ହରେଇବେ।

ଓଃ! ଏ'ସବୁ କଥା ଚିନ୍ତା କଲା ବେଳକୁ ମୁଣ୍ଡଟା ବୁଲେଇ ହେଉଛି।

ଖବର କାଗଜରେ ତାଙ୍କ ସ୍କୁଲ ହତ୍ୟାକାଣ୍ଡର କଥା ପ୍ରକାଶ ପାଇଛି ଦେଖି ଜଣେ ଗାଆଁ ଲୋକ ଦୌଡ଼ି ଆସି କହିଲା - "ବିନୟ ! ଏଇ ଦେଖ-ଦେଖ, ତମ ସ୍କୁଲ କଥା ବାହାରିଛି।"

ମିଛରେ ଉତ୍ସାହ ଦେଖାଇ ମୁଁ ଆଉ ଥରେ ମନେ ମନେ ଖବରଟାକୁ ପଢ଼ିଲି। ଦୀର୍ଘ ଶ୍ୱାସ ପକାଇ ଆଖିବୁଜି ଠାକୁରଙ୍କୁ ସ୍ମରଣ କଲି।

ସେହି ହତ୍ୟାକାଣ୍ଡ ରାତିରେ ବନା ଆଉ କାଳିଆ ବିନୟର ଠିକଣା ଖୋଜି ଖୋଜି ନିରାକାର ମଉସାଙ୍କ ଘରେ ପହଞ୍ଚିଥିଲେ । ପେଟେ ଲେଖା ମଦ ପିଇଥା'ନ୍ତି। ହିତାହିତ ଜ୍ଞାନ ନଥାଏ। ସେମାନେ ମୋର ସାଙ୍ଗ ବୋଲି କହି ଘରେ ଟିକେ ଆଶ୍ରୟ ମାଗିଥିଲେ। କିନ୍ତୁ ପରିଚୟ ଦେଇ ନଥିଲେ। ମାଉସୀ ସିଧାସଳଖ ମନା କରିଦେଲେ। ମୋନାକୁ ଚାହିଁ କାଳିଆ କହିଥିଲା - "ବଢ଼ିଆ ମାଲ୍‌ଟିଏ ଏ'ଘରେ ଅଛି। ବିନୟକୁ ଲଗାଇ ଦିନେ ଚିଡ଼ିଆକୁ ଆମ ମେସ୍‌କୁ ନେଇ ଯିବାକୁ ହେବ।"

ଏଭଳି କଦର୍ଯ୍ୟ ବ୍ୟବହାର କରୁଥିବା ପିଲା ଦି'ଟା ଯେ ମୋର ସାଙ୍ଗ ହୋଇ ପାରନ୍ତି, ମାଉସୀ ବିଶ୍ୱାସ କରିପାରୁ ନଥିଲେ । ରାତିରେ ମଉସା ଘରକୁ ଫେରି ସବୁ କଥା ଶୁଣିଲେ। ସେମାନେ ଠିକ୍ କଲେ, ଆଜିଠାରୁ ବିନୟକୁ ମଧ୍ୟ ଏ'ଦୁଆର ବନ୍ଦ। ବଢ଼ିଲା ଝିଅଟା କଲେଜ ଯାଉଛି। କେତେବେଳେ କ'ଣ ହେବ, କିଏ କହିପାରିବ ?

ସକାଳେ ମଉସା ଖବର କାଗଜ ପଢ଼ି ଚମକି ପଡ଼ିଲେ। ସେଇ ଦୁଇଟା ଟୋକା ନିଶ୍ଚୟ ଖୁନୀ ହୋଇଥିବେ, ଅନୁମାନ କରିନେଲେ। କିନ୍ତୁ ଅଡୁଆ ଭିତରେ ପଶି ଅଚିହ୍ନା ପିଲାଙ୍କର ଠିକଣା ଖୋଜିଲେ, ଲାଭ କିଛି ହେବ ନାହିଁ। ବରଂ ଶେଷରେ ଗାଆଁରେ ଥିବା ବିନୟ ହିଁ ବନ୍ଧା ହୋଇକି ଆସିବା ସାର ହେବ।

ମୋନା, ମଉସା-ମାଉସୀ ସମସ୍ତେ କବାଟ କିଳି ଘରେ ରହିଲେ। ଠିକ୍ କଲେ ସମସ୍ତେ କହିବେ - 'ଆମେ କିଛି ଦେଖି ନାହୁଁ, କିଛି ଶୁଣି ନାହୁଁ। କାହାରିକୁ ଆମେ ଜାଣୁନା। କେହି ଆମ ଘରକୁ ଆସି ନଥିଲେ କିମ୍ବା ସେମାନେ ଆମକୁ କିଛି କହି ନାହାନ୍ତି।'

ଏହା ଭିତରେ ମାସେ ବିତିଗଲା। ଖୁନୀ ଧରା ପଡ଼ିଲେ ନାହିଁ। ପୋଲିସ କୌଣସି ପ୍ରକାର ସୁରାକ୍ ପାଇ ପାରିଲେ ନାହିଁ। ସ୍କୁଲର ପରିବେଶ ଯଦିଓ ଗମ୍ଭୀର, ତଥାପି ନିୟନ୍ତ୍ରଣାଧୀନ। ଖବର କାଗଜରେ ଆମ ସ୍କୁଲ ଖୋଲିବା ନୋଟିସ ବାହାରିଲା। ଉପସ୍ଥାନ କମ୍ ହେଲେ ବି ସ୍କୁଲ ଖୋଲିଲା। ମୁଁ ସିଧା ଆସି ସ୍କୁଲରେ ପହଞ୍ଚିଲି। କ୍ୟାମ୍ପସ୍‌ରେ କାଳିଆ-ବନାକୁ ଦେଖି ମୋର ହଲକ ଶୁଖିଗଲା। ସେମାନେ ପୁରୁଣା ପ୍ରଫେସ୍‌ନାଲ୍ ଖୁନୀ ଭଳି ନିର୍ଭୟରେ, ଆରାମରେ ବୁଲାବୁଲି କରୁଥା'ନ୍ତି। କଥାବାର୍ତ୍ତାରେ ତାଙ୍କର କୌଣସି ପରିବର୍ତ୍ତନ ନାହିଁ, କିମ୍ବା ସେମାନେ

କିଛି ଗୋଟାଏ ଛୋଟ ବଡ଼ ଭୁଲ କରିଛନ୍ତି ବୋଲି ତାଙ୍କର ମୁହଁକୁ ଦେଖି କେହି କଳ୍ପନା ବି କରିପାରିବ ନାହିଁ। ପୂର୍ବଭଳି ସେ ଦୁହେଁ ଆସି ମୋ ଆଗରେ ଠିଆ ହେଲେ। ମୁଁ ଭାବୁଥିଲି, ମୋର କଳ୍ପନାଟା ବୋଧେ ଭୁଲ ହେଇଯାଇଛି। ଏମାନେ ହତ୍ୟାକାଣ୍ଡ ସହିତ ବୋଧହୁଏ ସଂପୃକ୍ତ ନୁହଁନ୍ତି। କାଳିଆ କହିଲା - "ତୁ ଆମର ସାଙ୍ଗ ବୋଲି କେଉଁଠି ହେଲେ ପରିଚୟ ଦେବୁ ନାହିଁ। ଆମ ପାଖରେ ଛୁରୀ କିମ୍ବା ପିସ୍ତଲ ଅଛି ବୋଲି କାହାରିକୁ କହିବୁ ନାହିଁ। ଯେଉଁ ଦିନ ଏକଥା ପ୍ରଘଟ କରିବୁ, ଜାଣିବୁ ସେହି ଦିନର ରାତିଟା ହେବ, ତୋ ପାଇଁ ଶେଷ ରାତି ।"

ବନା କହିଲା - "ଆରେ ! ଏ'ମାଇଚିଆ, ସେଦିନ ତ ତୋ ମଉସା ଘର ଦେଖେଇ ଦେଲୁ ନାହିଁ। ଆମେ ଖୋଜି ଖୋଜି ତୋ ମଉସା ଘର ପାଇଲୁ। ଆଉ ସେ ଘରେ ଥିବା ସୁନ୍ଦରୀ ତରୁଣୀର ସନ୍ଧାନ ମଧ୍ୟ ପାଇଯାଇଛୁ। ଏବେ ତୋର କାମ ହେଲା, ତାକୁ ଆଣି ମଝି ମଝିରେ ଆମ ମେସ୍‌ରେ ଛାଡ଼ିବୁ। ଓକେ ? ଯା'ଘରକୁ ଚାଲି ଯା'।"

ମୁଁ ଏଥର ଠିକ୍ ବୁଝିନେଲି - ଏଇମାନେ ହେଉଛନ୍ତି, ଅସଲ ଖୁନୀ। ଏମାନେ ଯେ କୌଣସି ମୁହୂର୍ତ୍ତରେ ମୋର ଜୀବନ ଦୀପକୁ ଲିଭେଇ ଦେଇ ପାରନ୍ତି। ଆଜି ମୋନା ଉପରେ ତାଙ୍କ ନଜର ପଡ଼ିଛି। କାଲି ମୋତେ ପିସ୍ତଲ ଦେଖାଇ ମୋନାକୁ ଆଣିବାକୁ କହିବେ। ଦିନକୁ ଦିନ ମୋ ଉପରେ ନୂଆ ବିପଦର ଘନ ବାଦଲ ମାଡ଼ି ଆସୁଛି। କ'ଣ କରିବି, କିଛି ସ୍ଥିର କରିପାରିଲି ନାହିଁ। ହାତଯୋଡ଼ି, ବାବା ଧବଳେଶ୍ୱରଙ୍କୁ ଡାକିବା ଛଡ଼ା ମୋର ଆଉ କିଛି ଉପାୟ ନଥିଲା।

ସେଦିନ ରାତିରେ ପୁଣି ଗୋଟାଏ ମର୍ଡର ହେଲା।

ହଷ୍ଟେଲ ସୁପରିଟେଣ୍ଡେଣ୍ଟ ପଣ୍ଡାବାବୁଙ୍କ ପାଖରେ ପୂର୍ବ ମର୍ଡର ସଂପର୍କରେ କିଛି ସୂଚନା ଥିଲା। ତେଣୁ ଖୁନୀମାନେ ତାଙ୍କୁ ବି ସଫା କରିଦେଲେ।

ପୋଲିସ ଗାଡ଼ି ଆସି ସମଗ୍ର ସ୍କୁଲ କ୍ୟାମ୍ପସ୍, ହଷ୍ଟେଲ ଘାଣ୍ଟି ଚକଟି ପକେଇଲେ। ତଥାପି ଖୁନୀର ସନ୍ଧାନ ପାଇଲେ ନାହିଁ। ପୁଣି ଅନିର୍ଦ୍ଦିଷ୍ଟ କାଳ ପାଇଁ ସ୍କୁଲ ବନ୍ଦ ହୋଇଗଲା। କାଳିଆ-ବନା ଆଉ ଦେଖା ଦେଲେ ନାହିଁ।

ଆତଙ୍କିତ ଅବସ୍ଥାରେ ମାଉସୀ-ମଉସା ଆଉ ମୋନାକୁ ଛାଡ଼ି ମୁଁ ଗାଆଁକୁ ଫେରି ଆସିଲି। ସେମାନେ ଭୟରେ ଘର ବଦଳେଇ ଦେଲେ। କିଛି ଦିନ ପରେ ସନ୍ଧାନରୁ ଜଣା ପଡ଼ିଲା, "କାଳିଆ-ବନା ହେଉଛନ୍ତି; ଦୁଇଟି ଯାକ ହତ୍ୟାକାଣ୍ଡର ମୁଖ୍ୟ ଆସାମୀ। ସେମାନେ ଫେରାର ହେଇ ଯାଇଛନ୍ତି। ତାଙ୍କୁ ଧରି ଦେବା କିମ୍ବା ତାଙ୍କ ସଂପର୍କରେ ସୂଚନା ଦେବା ପାଇଁ ପୋଲିସ ଏକ ଲକ୍ଷ ଟଙ୍କାର ପୁରସ୍କାର ଘୋଷଣା କରିଦେଲେ।

ଖବର କାଗଜରୁ ଏ'ସମ୍ବାଦ ଶୁଣି ଚାରିଆଡ଼େ ଆତଙ୍କ ଖେଳିଗଲା। ପୋଲିସ ସ୍ପଷ୍ଟ କରିଦେଲେ, ଖୁନୀ ଅନ୍ୟ ରାଜ୍ୟକୁ ପଳାଇ ଯାଇଛନ୍ତି। ନିର୍ଭୟରେ ପିଲାମାନଙ୍କୁ ଆସି ସ୍କୁଲରେ ଉପସ୍ଥିତ ରହିବାକୁ ନୋଟିସ ପ୍ରକାଶ ପାଇଲା। ଭୟାତୁର ହୋଇ ମୁଁ ଆସି ସ୍କୁଲରେ ପହଞ୍ଚିଲି। ହଷ୍ଟେଲର ରୁମ୍‌ଟିଏ ମଧ୍ୟ ମିଳିଗଲା। ମଝିରେ ମଝିରେ ମଉସାଙ୍କ ଘରକୁ ବୁଲିଯାଏ। ତାଙ୍କ ଦୟାରୁ ମୁଁ ପାଠ ପଢ଼ିପାରୁଛି ବୋଲି କୃତଜ୍ଞତା ଜଣାଏ। ମୋନା ସାଙ୍ଗରେ ବି ଦେଖା ହେଇଯାଏ। ଏହା ମଧ୍ୟରେ

ବାତ୍ୟା ପ୍ରପୀଡ଼ିତ ଅନୁଦାନ ବି ମିଳିଗଲା। ପାଠପଢ଼ାରେ କୌଣସି ଅସୁବିଧା ରହିଲା ନାହିଁ।

ଚାହୁଁ ଚାହୁଁ ପଢ଼ା ଶେଷ ହେବାକୁ ବସିଲା। ମଉସା ବୁଝାବୁଝି କରୁ କରୁ କଟକ ସରକାରୀ ପ୍ରେସ୍‌ରେ ହିଁ ମୋତେ ଚାକିରି ଖଣ୍ଡେ ମିଳିଗଲା। ଏଥର ପୁଣି ଥରେ ସେ ମଉସା ମାଉସୀଙ୍କ ପାଖରେ କୃତଜ୍ଞତା ଜଣାଇଲି।

ଏହା ଭିତରେ କାଳିଆ-ବନାଙ୍କର କୌଣସି ଖୋଜ ଖବର ନାହିଁ। ସମସ୍ତେ ଭାବିଲେ, ଖୁନୀ ଦି'ଟା ପରସ୍ପର ମଧ୍ୟରେ ହଣାକଟା ହେଇ ମରି ଯାଇଥିବେ। ନଚେତ୍ କୌଣସି ଦୁର୍ଘଟଣାରେ ପଡ଼ି ନିଶ୍ଚିହ୍ନ ହେଇ ଯାଇଥିବେ ।

ଦିନେ ଅଫିସରେ ମୁଁ ବସିଛି। ସାଙ୍ଗେ ଜଣେ ପ୍ରସ୍ତାବ ଦେଲେ, ମୋନାକୁ ଯଦି ତୁ ବାହା ହେଇ ପାରନ୍ତୁ, ତେବେ ତାଙ୍କ ପ୍ରତି ତୋର ଅସଲ କୃତଜ୍ଞତା ହେଇ ପାରନ୍ତା। ତୁ ଯଦି ହଁ କହିବୁ, ମୁଁ ତୋ ମଉସା-ମାଉସୀଙ୍କୁ ରାଜି କରେଇ ଦେବି।

ଏତେ ଦିନ ଯାଏ, ମୋ ମୁଣ୍ଡରେ ମୋନା କଥା ପଶି ନଥିଲା। ସତରେ ମୋନା ତ ସବୁ ଦିଗରୁ ଠିକ୍ ଅଛି । ମଉସା ମାଉସୀଙ୍କର ଏକମାତ୍ର ଅଲିଅଳ ଝିଅ। ଭାଇ ଜଣେ ଡାକ୍ତର। ବହୁତ ବଢ଼ିଆ ହେବ।

- ଛାଡ଼ ସେ ସବୁ କଥା। ପ୍ରଥମେ ତ ମଉସା ହିଁ ମୋତେ ସାହାଯ୍ୟ ସହଯୋଗ କରି ପାଠ ପଢ଼ିବାର ସୁଯୋଗ ଦେଇଥିଲେ । ତାଙ୍କରି ପାଇଁ ମୁଁ ଆଜି ଚାକିରି ଖଣ୍ଡିଏ ମଧ୍ୟ ପାଇଛି। ଅତି କମ୍‌ରେ କୃତଜ୍ଞତା ଜଣାଇ ସବୁ ଦିନ ପାଇଁ ମୁଁ ତାଙ୍କର ହେଇଯିବା ହିଁ ଭଲ ହେବ।

ବାବା ଧବଳେଶ୍ୱରଙ୍କ ମନ୍ଦିରର ନିରାଡ଼ମ୍ବର ବାତାବରଣରେ ମୋନାଲିସା ସହିତ ମୋର ଶୁଭ ପରିଣୟ ଅନୁଷ୍ଠିତ ହେଲା। ମଉସା ଆମ ଗାଆଁରେ ମୋ ପାଇଁ ଛୋଟିଆ ଘରଟିଏ ତୋଳିଦେଲେ। ମୋତେ କହିଲେ - "ଏଇଟା ହେଉଛି, ତମ ବାପ ଗୋସାପାଙ୍କର ସ୍ୱାଭିମାନ। ଯେଉଁଠି ରହୁଛ ରୁହ, ବର୍ଷରେ ଥରେ ଆସି ଏଇ ଘରେ ତମ ବାପା ମାଆଙ୍କର ଶ୍ରାଦ୍ଧଟିଏ ଦେଇଯିବ । ଏବେ ମାସେ ଦି'ମାସେ ଗାଆଁରେ ରହି କଟକ ଯିବା ଆସିବା କର। ଘର ମିଳିଗଲେ, ମୋନାକୁ ଧରି ପଳାଇ ଆସିବ। ଗାଆଁରେ ଘରଟିଏ ଥିଲେ, ବହୁତ କର୍ମରେ ଆସିବ।"

ମଉସାଙ୍କ କଥା ମାନି ମୋନାଲିସାକୁ ଧରି ଆଠ ଦିନ ହେଲା, ସେହି ନୂଆ ଘରେ ରହୁଥିଲି। ରାତି ଦଶଟା ପାଖାପାଖି ହେବ, କବାଟର ଖଟ ଖଟ ଶବ୍ଦ ଶୁଣି ମୁଁ ଯାଇ କବାଟ ଖୋଲି ଦେଲି। ଦି'ଜଣ ଯୁବକ ଦୁଆରେ ଠିଆ ହେଇଛନ୍ତି। ମୁହଁରେ ମେଞ୍ଚା ମେଞ୍ଚା ଦାଢ଼ି। ଦେହରେ କଳା ଚାଦର। ଚମକି ପଡ଼ିଲି। ସ୍ୱାଭାବିକ ଭାବରେ ପଚାରିଦେଲି - "କାହାକୁ ଖୋଜୁଛନ୍ତି ?"

- "ତୋତେ ଖୋଜୁଛି ବେ ମାଇଚିଆ। ଯା'ଭିତରେ ତୁ ଚାକିରି କରି ସାରିଲୁଣି। ବାହାହେଇ ସାରିଲୁଣି। ପୁଣି ସେହି ସୁନ୍ଦରୀ ତରୁଣୀକୁ। ସେସବୁ ଖବର ଆମ ପାଖରେ ଅଛି। ଏବେ ଚିହ୍ନି ପାରିଲୁ ନା ନାହିଁ ?" କାଳିଆ କହିଲା।

ଥତମତ ହେଇ ମୁଁ କହିଲି - "ହଁ-ହଁ, ତମେ କାଳିଆ ଆଉ ବନା।"

- "ବେଶ୍। ଠିକ୍ ମନେ ରଖିଛୁ। ଆଜି ଆମେ ତୋ ଘରେ ଗେଷ୍ଟ। ଆଉ ସେହି ସୁନ୍ଦରୀ ତରୁଣୀଟିକୁ ଉପଭୋଗ କରିବୁ। କିଛି ଆପତ୍ତି ଅଛି କି ? ତୋତେ

ଆମେ ଅନେକ ସାହାଯ୍ୟ କରିଛୁ। ର୍ୟାଗିଂରୁ ବଞ୍ଚେଇଛୁ। ତା'ର ପ୍ରତିଦାନରେ କ'ଣ ଏତିକି ..."

ବନା ପିସ୍ତଲଟାକୁ ମୋ ମୁଣ୍ଡରେ ଲଗାଇ ମୋତେ ଭିତରକୁ ଠେଲି ନେଇଗଲା। ଭିତର ପଟୁ କବାଟ ବନ୍ଦ କରିଦେଲା।

ଗୋଟିଏ ଘରେ ରହିଗଲେ, ଦୁଇଟା ମହାବଳ ବାଘ ଆଉ ଦୁଇଟି ନିରୀହ ହରିଣ।

- ଖାଦ୍ୟ ଖାଦକ।

- ଫୁଲ ଆଉ ଛୁରୀ। ଦୁଇ ହାତ ଟେକି ମୁଁ ଠିଆ ହେଇଥାଏ। କାଳିଆ ଚାଲିଗଲା ସେ ପାଖ ଘରେ ଥିବା ମୋନାଲିସା ପାଖକୁ। ଭୟଙ୍କର ଚିତ୍କାର କରି ଉଠିଲା ମୋନାଲିସା "ନାଇଁ"।

ବନା ହସି ଉଠିଲା - "ହାଃ-ହାଃ।"

ବନା ଜାଣେ, ମୁଁ ଗୋଟାଏ ଅସହାୟ ନିରୀହ ପ୍ରାଣୀ। ପ୍ରତିରୋଧ କରିବାର ଶକ୍ତି ମୋର ନାହିଁ। କିମ୍ବା ପ୍ରତିବାଦ କରିବାର ଦାମ୍ଭିକତା ମଧ୍ୟ ନାହିଁ।

ନିର୍ଭୟରେ ସେ ପିସ୍ତଲଟାକୁ ଅଣ୍ଟାରେ ଖୋସି ଦେଇ ମୋନାଲିସର ବସ୍ତ୍ରହରଣ ପାଇଁ ସେ ଘରକୁ ଆଗେଇ ଗଲା।

ପୁଣି ଥରେ ମୃତ୍ୟୁକାଳୀନ ଚିତ୍କାର।

ଥୟ ଧରି ପାରିଲି ନାହିଁ। ଦୌଡ଼ି ଗଲି ସେପଟ ଘରକୁ। ଗୋଟାଏ ଅସହାୟ ହରିଣୀକୁ ଦୁଇଟା ମହାବଳ ବାଘ ଚିରି ଫାଡ଼ି ଖାଇ ଯାଉଥିବାର ଦୃଶ୍ୟ। ଜୀବନକୁ ବାଜି ଲଗେଇ ବନା ଅଣ୍ଟାରୁ ଟାଣି ଆଣିଲି, ପିସ୍ତଲଟାକୁ। ଶିକାର କଲି ଦୁଇଟା ଯାକ ମହାବଳ ବାଘକୁ। ହରିଣୀଟା ଖାଲି ଥରୁଥାଏ।

ପରୀକ୍ଷା କରିନେଲି, ଆଉ ପିସ୍ତଲରେ ଗୁଳି ନାହିଁ।

ooo



# ଅନୁପମା



ଡାକପ୍ୟାଡ୍ ଖୋଲିଲେ, ମନୋଜ ବାବୁ। ହଠାତ ତାଙ୍କ ଆଖି ଅଟକିଗଲା, ଫର୍ମ୍ ଆଡ୍ରେସ୍ ଉପରେ। କେନ୍ଦୁଝରର ସ୍ୱେଚ୍ଛାସେବୀ ସଂଗଠନ 'ପ୍ରଭା'ର ସେକ୍ରେଟାରୀ ଅନୁପମା ଦେବୀ ଏ'ଚିଠି ଖଣ୍ଡିକ ଲେଖିଛନ୍ତି।

ଆଖି ବୁଲେଇ ନେଲେ, ସମଗ୍ର ଚିଠି ଉପରେ।

ଅନୁପମା ଦେବୀ ନିମନ୍ତ୍ରଣ ଜଣାଇଛନ୍ତି, ତାଙ୍କ ଅନୁଷ୍ଠାନକୁ ପରିଦର୍ଶନ କରିବା ପାଇଁ। ତାଙ୍କର ପ୍ରୋଜେକ୍ଟ ରିପୋର୍ଟ ମଧ୍ୟ ଚିଠି ସହିତ ସଂଲଗ୍ନ ହୋଇଛି। ଫଣ୍ଡିଂ ସେକ୍ସନ୍ ତରଫରୁ 'ପ୍ରଭା'କୁ ଚିଠି ଯାଇଥିଲା। ଆଜି ତା'ର ଉତ୍ତର ଆସିଛି।

ମନୋଜ ବାବୁ ପୁଣି ଥରେ ଦସ୍ତଖତଟିକୁ ନିରୀକ୍ଷଣ କରି ଭାବିଲେ, 'ଓଃ! ପ୍ରଭାର ସେକ୍ରେଟାରୀ ଜଣେ ମହିଳା। ନିଶ୍ଚୟ ଜଣେ ଯୁବତୀ ହେଇଥିବେ। ନାଆଁଟା ବି ସେଇମିତି ହେଇଛି।'

ମନକୁ ମନ କହିଲେ - 'ଅନୁପମା ଦେବୀ ସେକ୍ରେଟାରୀ ନାମକୁ ମାତ୍ର ହେଇ ପାରନ୍ତି ମଧ୍ୟ। ଆଜିକାଲି ତ ସେଇମିତି ଚାଲିଛି। ସ୍ୱାମୀ କିମ୍ବା ଭାଇ ସବୁକାମ କରୁଥିବେ। ନାମକୁ ମାତ୍ର ସ୍ତ୍ରୀ କିମ୍ବା ଭଉଣୀ ସେକ୍ରେଟାରୀ ଥିବେ। ବୋଧହୁଏ ସ୍ୱାମୀ ତାଙ୍କର କୌଣସି ସରକାରୀ ଦପ୍ତରରେ ଚାକିରି କରୁଥିବେ। ପତ୍ନୀକୁ କାଗଜପତ୍ରରେ ଦର୍ଶାଇ ସଂଗଠନରୁ ଫାଇଦା ଉଠଉଥିବେ। ଛାଡ଼ ସେ ଯାହା ହଉ। ଆମ ଚିଠିର ଉତ୍ତର ତ ଯଥାଶୀଘ୍ର ସମ୍ଭବ ସେମାନେ ଦେଇ ସାରିଛନ୍ତି। ତାଙ୍କର ପ୍ରୋଜେକ୍ଟ ରିପୋର୍ଟ ବି ଖୁବ୍ ସୁନ୍ଦର ଭାବେ ପ୍ରସ୍ତୁତ ହେଇଛି। ଏତେ ଗୁଡ଼ାଏ ଟଙ୍କା ମଂଜୁର କରିବା ପୂର୍ବରୁ ଫିଲଡ୍ ଇନ୍ସପେକସନ୍‌ଟା କରିନେବା ଠିକ୍ ହେବ।'

ଆଗାମୀ ଶୁକ୍ରବାର ଦିନ 'ପ୍ରଭା'ର କାର୍ଯ୍ୟକ୍ରମ ଏବଂ କାଗଜପତ୍ର ଦେଖିବା ପାଇଁ ପ୍ରସ୍ତୁତ ହେଇ ପଡ଼ିଲେ, ମନୋଜବାବୁ। ଟେଲିଗ୍ରାମ୍‌ଟିଏ ପଠେଇ ଦେଲେ, ଅନୁପମାଙ୍କ ଠିକଣାରେ।

ଠିକ୍ ସମୟରେ ମନୋଜବାବୁଙ୍କ କାର୍ ଯାଇ ପହଞ୍ଚିଗଲା, 'ପ୍ରଭା' ଗେଟ୍ ପାଖରେ। 'ପ୍ରଭା'ର କର୍ମକର୍ତ୍ତାମାନେ ଅତ୍ୟନ୍ତ ଉତ୍ସୁକତାର ସହିତ ଅପେକ୍ଷା କରି ରହିଥିଲେ। ଶଙ୍ଖ, ହୁଳହୁଳି ଧ୍ୱନିରେ ଉଚ୍ଛୁଳି ପଡ଼ିଲା 'ପ୍ରଭା'ର ଆଖପାଖ ଅଞ୍ଚଳ।

ଅନ୍ତେବାସୀ ଅସହାୟ ବୃଦ୍ଧବୃଦ୍ଧାମାନେ ନୂଆ ପୋଷାକ ପିନ୍ଧି କିଛି ଗୋଟାଏ ନୂଆ ଜିନିଷ ଦେଖିବାକୁ ବ୍ୟାକୂଳ ହେଇ, ଭଙ୍ଗା ଚାଳଘର ବାରଣ୍ଡାରେ ଠିଆ ହେଇଥା'ନ୍ତି। ଫୁଲମାଳକୁ ଧରି ମନୋଜବାବୁଙ୍କ ପାଖକୁ ଆଗେଇ ଆସୁଥିଲେ. ଜଣେ ତରୁଣୀ। ବେଶଭୂଷା ପରିପାଟୀ ବେଶ୍ ରୁଚି ସଂପନ୍ନ ଏବଂ ମୁହଁରେ ପୁଣି ଆଭିଜାତ୍ୟର ଛାପ।

ମନୋଜବାବୁ ଅନୁମାନ କରିନେଲେ, ତରୁଣୀ ଜଣକର ବୟସ ତେଇଶି କି ଚବିଶ ହେବ। ତେବେ ଇଏ ନିଶ୍ଚୟ ଅନୁଷ୍ଠାନର ସଂପାଦିକା, ଅନୁପମା ଦେବୀ ହେଇଥିବେ। ଆଦର ଅଭ୍ୟର୍ଥନା ଓ ପୁଷ୍ପମାଲ୍ୟ ଅର୍ପଣ ଭଳି ଫର୍ମାଲିଟି କାର୍ଯ୍ୟକ୍ରମ ଶେଷରେ ସମୀକ୍ଷା ବୈଠକ ବସିଲା। ତାଙ୍କର ଅନୁମାନ ସତ ହେଲା।

ତରୁଣୀ ଜଣକ ଥିଲେ, ଅନୁଷ୍ଠାନର ସଂପାଦିକା - ଅନୁପମା ଦେବୀ।

ସାତ ଆଠଜଣ ଯୁବକ ମନୋଜବାବୁଙ୍କୁ ପ୍ରତି ମୁହୂର୍ତ୍ତରେ ସହଯୋଗ କରୁଥା'ନ୍ତି। ମନୋଜବାବୁଙ୍କ ବାମ ପାଖରେ ନୀରବରେ ବସି ସବୁ କାଗଜପତ୍ର ଯୋଗାଇ ଦେଉଥାନ୍ତି, ତରୁଣୀ ସଂପାଦିକା। ଅଳ୍ପ ଭାଷିଣୀ, ମଧୁର କଣ୍ଠି ତଥା ଖୁବ୍ ଶୃଙ୍ଖଳିତ ପୋଷାକ ପରିହିତା ତରୁଣୀ ଜଣଙ୍କର ଆଚରଣ ମନୋଜ ବାବୁଙ୍କୁ ଯଥେଷ୍ଟ ପ୍ରଭାବିତ କରି ସାରିଥିଲା। ଜଳପାନ ପର୍ବରେ ଅନୁପମା ଦେବୀ ତାଙ୍କ ସହିତ ସହଯୋଗ କରୁଥିଲେ।

ଚା' କପ୍‌ଟାକୁ ଉଠାଇ ଓଠରେ ଲଗାଉ ଲଗାଉ ମନୋଜ ବାବୁ ଅନୁପମା ଦେବୀଙ୍କ ମଥାକୁ ନିରୀକ୍ଷଣ କଲେ। ମଥାରେ ସିନ୍ଦୂର ନାହିଁ। ସେ ଆଶ୍ୱସ୍ତି ହେଲେ, ତରୁଣୀ ଜଣକ ଏବେ ବି ଅବିବାହିତା। ନିଜର ଅନ୍ୟମନସ୍କତାକୁ ଲୁଚେଇବାକୁ ଯାଇ, ସେ ତାଙ୍କୁ ପ୍ରଶ୍ନଟାଏ ପଚାରି ନେଲେ - "ମାଡାମ୍! ପଢ଼ାପଢ଼ି କେତେବାଟ କରିଛନ୍ତି ?"

- "ସୋସିଆଲ ସାଇନ୍ସରେ ପି.ଜି.।"

- "ତେବେ ତ ଭଲ କଥା। ଇଏସବୁ କାମରେ ଆପଣଙ୍କ ପାଠ ବି ନିଶ୍ଚୟ ସାହାଯ୍ୟ କରୁଥିବ।"

ଅଳ୍ପ ଟିକେ ହସି ଦେଇ ଅନୁପମା ଦେବୀ ସମ୍ମତି ପ୍ରଦାନ କଲେ। ଜଣେ ଶିକ୍ଷିତା ସୁନ୍ଦରୀ ପୁଣି ଅବିବାହିତା ମହିଳାଙ୍କ ସହିତ ଅଦରକାରୀ କଥାଗୁଡ଼ାଏ ପଚାରି ବୁଝିବା ବୋଧହୁଏ ଭୁଲ ହେଉଛି. ମନେ କଲେ ମନୋଜବାବୁ। ତାଙ୍କର ବୟସ ଏବେ ଚାଳିଶ ପାଖାପାଖି। ପୁଅଝିଅ ବଡ଼ ବଡ଼ ହେଲେଣି। ଅନ୍ୟମାନେ ବି ତାଙ୍କର କାର୍ଯ୍ୟକଳାପକୁ ଖୁବ୍ ସନ୍ତର୍ପଣରେ ନିରୀକ୍ଷଣ କରୁଛନ୍ତି। ତେଣୁ ସେ ଟିକେ ନିଜକୁ ସଂଯତ କରିନେଲେ। ନିଜେ ଯେଉଁ କାମରେ ଆସିଛନ୍ତି, ସେ କାମଟି ସୁରୁଖୁରୁରେ ହେଇଗଲେ ଗଲା। ବାଜେ କଥାରେ ମୁଣ୍ଡ ଘୂରେଇ ଲାଭ କ'ଣ ? ଟିକେ ଅନ୍ୟମନସ୍କ ହେଇଗଲେ, ମନୋଜବାବୁ।

- "ସାର୍! ମୁଁ ଭାବୁଛି, ଲଞ୍ଚ୍ ପରେ ପରେ ଆମେ ଟିକେ ଫିଲ୍ଡ ବୁଲି ଆସିବା। ମୁଁ ଆପଣଙ୍କୁ ଯେଉଁ ପ୍ଲାନ୍ ଦେଖଉଥିଲି, ସେଥିରେ ଟିକେ ପରିବର୍ତ୍ତନ କରିବାକୁ ଚାହୁଁଛି, ଆପଣ ଯଦି ଅନୁମତି ଦେବେ, ମୁଁ ଆଉ ଗୋଟାଏ ଫ୍ରେସ୍ ପ୍ଲାନ୍ କରି ପଠେଇ ଦେବି।"

ଅନୁପମାଙ୍କର ବୀଣାଜିଣା ମଧୁର କଣ୍ଠରୁ କଥା କେଇପଦ କାହିଁକି କେଜାଣି ମନୋଜବାବୁଙ୍କୁ ଖୁବ୍ ଭଲ ଲାଗିଲା। ସେ ଆଖି ଉଠେଇ ଅନୁପମାଙ୍କର କହିବା ଢଙ୍ଗକୁ ଉପଭୋଗ କରୁଥିଲେ। କିନ୍ତୁ କେଉଁ ବିଷୟରେ ସେ କି'କଥା କହିଲେ, ଠିକ୍ ଭାବେ ବୁଝି ପାରିଲେ ନାହିଁ।

ପ୍ରଭାର କର୍ମଚାରୀଙ୍କ ଅନୁରୋଧରେ ମନୋଜବାବୁ ଖିଆପିଆ ସାରି ପ୍ରସ୍ତାବିତ ଜରାଶ୍ରମ ସ୍ଥାନ ପରିଦର୍ଶନ କରିବାକୁ ବାହାରି ପଡ଼ିଲେ। ମନୋଜବାବୁ କାର୍ ଭିତରେ ବସି ସୌଜନ୍ୟ ରକ୍ଷା କରି ପଚାରି ଦେଲେ - "କେହି ଯଦି ଆମ କାର୍‌ରେ ଆସିବାକୁ ଚାହୁଁଥା'ନ୍ତି, ଆସନ୍ତୁ। କର୍ମଚାରୀ-କର୍ମକର୍ତ୍ତାମାନଙ୍କ ମଧ୍ୟରେ ପରସ୍ପର ପରସ୍ପରକୁ ଆଖି ଠାରରେ କାର୍ ଭିତରକୁ ଯିବାକୁ ପରାମର୍ଶ ଦେଉଥା'ନ୍ତି। କିନ୍ତୁ, କେହି ବି ଜଣେ ନିଜେ ଭିତରକୁ ପଶୁ ନଥା'ନ୍ତି। ଶେଷରେ ଅନୁପମା ଦେବୀ ମନୋଜବାବୁଙ୍କ ବାମ ପଟ ଡୋର ଖୋଲି କାର୍‌ରେ ବସିଲେ। ଡ୍ରାଇଭର ଗାଡ଼ି ଷ୍ଟାର୍ଟ କରି ସାରିଲାଣି। କେବଳ ସାହେବଙ୍କର ଇସାରା ପାଇଲେ ଚକ ଗଡ଼ିବ।

ମନୋଜବାବୁ ଅନ୍ୟମନସ୍କ ହେଇ ଭାବିଲେ - ଜଣେ ଅଳ୍ପ ପରିଚିତା ସୁନ୍ଦରୀ ଯୁବତୀଙ୍କୁ ସାଙ୍ଗରେ ଧରି ଏତେ ଗୁଡ଼ାଏ ବାଟ ଏକୁଟିଆ ଯିବାଟା ଠିକ୍ ହେବ ନାହିଁ। କେତେବେଳେ କେଉଁ କଥା। ସବୁବେଳେ ତ ସବୁ ଘଟଣା ଭଲରେ ଯାଏ ନାହିଁ। କେବେ ନା'କେବେ, କେହି ନା'କେହି ଏ'ଘଟଣାଟିକୁ ନେଇ ଦୁର୍ଘଟଣାରେ ପରିଣତ କରି ଦେଇପାରେ। ଯୁବତୀ ଜଣଙ୍କର ସ୍ୱାମୀ ସିନା ନାହାନ୍ତି, ତେବେ ତାଙ୍କର ଜଣେ ସହକର୍ମୀଙ୍କୁ ସାଙ୍ଗରେ ନେଇଯିବା ଭଲ ହେବ। ସେ ଡ୍ରାଇଭରକୁ ଆଦେଶ ଦେଲେ, "ଟିକିଏ ରୁହ। ପ୍ରଭାର ଆଉ କେହି ଜଣେ ଆମ ସାଙ୍ଗରେ ଆସନ୍ତୁ।"

ମନୋଜବାବୁଙ୍କ କଥା ମୁହଁରୁ ବାହାରି ସାରିଛି କି ନାହିଁ, ଜଣେ ଜିନ୍ ପ୍ୟାଣ୍ଟ ଆଉ ଗଞ୍ଜି ପିନ୍ଧିଥିବା ରସିକ ଯୁବକ ତରବର ହେଇ ଅନୁପମା ଦେବୀଙ୍କ ପାଖ ଡୋର ଖୋଲି ବସି ପଡ଼ିବାର ଉପକ୍ରମ କଲା।

ମନୋଜବାବୁ ଯୁବକଟିର ତରବରିଆ ପ୍ରବେଶକୁ ଲକ୍ଷ୍ୟକରି ବୁଝି ନେଇଗଲେ। ଏ'ଯୁବକ ଜଣକ ଅନେକ ଦିନରୁ ଏହି ସୁଯୋଗର ଅପେକ୍ଷାରେ ହିଁ ଥିଲା।

ଜଣେ ସୁନ୍ଦରୀ ତରୁଣୀ ପାଖରେ ବସି ପଡ଼ିବା କିମ୍ବା ତା'ସଂସ୍ପର୍ଶରେ ଆସିବାର ସୁଯୋଗ କ'ଣ ସବୁବେଳେ ଆସେ ? ଯଦି ସୁଯୋଗ କେବେ ମିଳିଗଲା, ତାକୁ କ'ଣ ହାତଛଡ଼ା କରିବା କଥା। ଯୁବକ ଜଣକ ନିଶ୍ଚୟ ମୋ ଦୟାରୁ ଆଜି ଅନୁପମା ଦେବୀଙ୍କ ପାଖରେ ଅତି ନିବିଡ଼ ଭାବରେ ବସିବାର ସୁଯୋଗ ପାଇଯିବ। ନା'ମୁଁ ତାକୁ ସେ ସୁଯୋଗ ଏତେ ସହଜରେ ଦେଇ ନପାରେ। ତାଙ୍କ ପାଟିରୁ ବାହାରି ପଡ଼ିଲା -

"ରୁହ ରୁହ, ମାଡାମ୍ ବସିଛନ୍ତି। କ'ଣ ଦେଖାଯାଉ ନାହିଁ। ଏକଦମ୍ ଚଢ଼ି ଆସୁଛ ଯେ। ଆଗରେ ସିଟ୍ ଖାଲି ଅଛି, ଡ୍ରାଇଭର ପାଖରେ ଯାଇ ବସ।"

ଜୋକ ମୁହଁରେ ଲୁଣ ଦେଲା ଭଳି ଯୁବକ ଜଣକ ନିଜ ଆଡ଼କୁ ସଂକୁଚିତ ହେଇଗଲେ। ଡ୍ରାଇଭର ଧଡ଼୍ କରି ଆଗ ଗେଟ୍ ଖୋଲି ଦେଲା। ସୁନାପିଲା ପରି ଯୁବକ ଜଣକ ନୀରବରେ ବସି ରହିଲା।

ମନୋଜବାବୁ ବୁଝିନେଲେ, ପ୍ରଭାର ଅବୈତନିକ କର୍ମଚାରୀ ଏହି ବେକାର ଯୁବକ ଜଣକ ନିଶ୍ଚୟ ସାଧାସିଧା ମଣିଷଟିଏ । ଅନୁଷ୍ଠାନର ଲାଭ-କ୍ଷତି, ଭଲ ମନ୍ଦ, ଦେବାନେବା କିମ୍ବା ଅନୁପମା ଦେବୀଙ୍କ ସୁଖ ଦୁଃଖରେ ତା'ର କିଛି ଯାଏ ଆସେ ନାହିଁ।

ବେଶ୍ ଏବେ ଗାଡ଼ି ଚାଲିଲା । ଏହା ଭିତରେ ଅଧ ଘଣ୍ଟା ବିତିଗଲାଣି । ଅତି ବେଶିରେ ଦୁଇ ଚାରିପଦ କଥା ଅନୁପମା କହିଛନ୍ତି। କିନ୍ତୁ ମନୋଜବାବୁ ଭାବିଛନ୍ତି, ବହୁତ ବେଶି।

ଏଇ ପନ୍ଦର ସତର ବର୍ଷ ଚାକିରି ଭିତରେ ତାଙ୍କର ଅନେକ ଅଭିଜ୍ଞତା ରହିଛି । ଅନେକ ଜାଗାକୁ ସେ ପରିଦର୍ଶନ କରି ଲକ୍ଷ ଲକ୍ଷ ଟଙ୍କା ମଂଜୁର କରିଛନ୍ତି। ଅନେକ ଲୋକଙ୍କ ସହିତ ମିଶିଛନ୍ତି। ଆଜି କେମିତି ଗୋଟାଏ ନୂଆ ଅଭିଜ୍ଞତା ଅର୍ଜନ କଲାଭଳି ସେ ଅନୁଭବ କରୁଛନ୍ତି। ପାଖକୁ ଲାଗି କାର୍ ଭିତରେ ବସିଛନ୍ତି - ଅନୁପମା ଦେବୀ। ସମୟଟା ଖୁବ୍ ଦ୍ରୁତଗତିରେ ଗଡ଼ି ଚାଲିଛି । ତାଙ୍କର ମନେ ପଡ଼ିଗଲା - କେଉଁଠି ଗୋଟାଏ ବହିରୁ ପଢ଼ିଥିଲେ - ତତଲା ଲୁହା ଉପରେ ପାଞ୍ଚ ସେକେଣ୍ଡ୍ ବସିଲେ, ତାହା ପାଞ୍ଚ ଘଣ୍ଟା ପରି ଲାଗେ । ଅଥଚ ଜଣେ ସୁନ୍ଦରୀ ତରୁଣୀର ସାନ୍ନିଧ୍ୟରେ ପାଞ୍ଚ ଘଣ୍ଟା କଟିଯାଏ, ମାତ୍ର - ପାଞ୍ଚ ମିନିଟ୍ ଭଳି । ପ୍ରଖ୍ୟାତ ବୈଜ୍ଞାନିକ ଆଇନଷ୍ଟାଇନ୍ ପୁଣି ଏଇ କଥାକୁ ଆପେକ୍ଷିକ ତତ୍ତ୍ୱ ବୁଝେଇବାକୁ ଯାଇ କହିଥିଲେ।

ମନୋଜବାବୁ ସଂପୂର୍ଣ୍ଣ ଭାବେ ଅନ୍ୟମନସ୍କ ରହୁଥା'ନ୍ତି। ପ୍ରସ୍ତାବିତ ଜରାଶ୍ରମ ସ୍ଥାନ ପରିଦର୍ଶନ ପ୍ଲାନ୍ ସଂଶୋଧନ ପାଇଁ ଅନୁମତି ଭଳି ସବୁ କାମ ଖୁବ୍ ଶୀଘ୍ର ଶୀଘ୍ର ଶେଷ ହେଇଥିଲା। ସନ୍ଧ୍ୟା ପୂର୍ବରୁ କାର ଫେରି ଆସିଲା, ପ୍ରଭାର ପୁରୁଣା ଭଙ୍ଗାଚାଳ ଘର ଗେଟ୍ ପାଖକୁ। ମନୋଜବାବୁ ଠିକ୍ କରି ସାରିଛନ୍ତି। ଯେତେ ଅଧିକରୁ ଅଧିକ ଟଙ୍କା ମଞ୍ଜୁର କରିହେବ, ସେ ନିଶ୍ଚୟ ଅନୁପମା ଦେବୀଙ୍କ ପାଇଁ ହିଁ କରିଦେବେ।

ଗାଡ଼ିରୁ ଓହ୍ଲେଇ ପଡ଼ି ଅନୁପମା ଦେବୀ ମନୋଜବାବୁଙ୍କୁ ଚା' ପିଇବା ପାଇଁ ଅନୁରୋଧ କଲେ।

ସନ୍ଧ୍ୟା ସୁଦ୍ଧା କେନ୍ଦୁଝରରେ ପହଞ୍ଚିବାକୁ ସେ ସ୍ଥିର କରିଥିଲେ। କିନ୍ତୁ ପଦ୍ମପୁରରେ ହିଁ ମୁହଁ ଅନ୍ଧାର ହେଲାଣି। ମନ ତାଙ୍କର ଚଞ୍ଚଳ। ତଥାପି ଅନୁପମା ଦେବୀଙ୍କ ସହିତ ଚା'କପେ ପିଇବାର ଲୋଭକୁ ସେ ସମ୍ବରଣ କରି ପାରିଲେ ନାହିଁ। ଯୁବକ ଜଣକ ଏହା ମଧ୍ୟରେ ଗେଟ୍ ଖୋଲି କାର୍ ଭିତରୁ ବାହାରି କୁଆଡ଼େ ଅଦୃଶ୍ୟ ହେଇ ଗଲାଣି।

ମନୋଜବାବୁ କାର୍ ଭିତରୁ ବାହାରି ପଡ଼ି ଅନୁପମା ଦେବୀଙ୍କୁ ସଚେତନ କରାଇ ଦେଲେ, "ଦେଖନ୍ତୁ ସନ୍ଧ୍ୟାସୁଦ୍ଧା ଆମର କେନ୍ଦୁଝରରେ ପହଞ୍ଚିବା କଥା। ଆପଣ କହୁଥିଲେ ପରା କେନ୍ଦୁଝରରେ ରହୁଛନ୍ତି, ଆମ କାର୍‌ରେ ଚାଲିଯିବେ। ଆସନ୍ତୁ।"

ଆପଣଙ୍କ ଘରେ ଚା'କପେ ପିଇ ଦେଇ ସେଇଠୁ ସିଧା ଭୁବନେଶ୍ୱର ଚାଲିଯିବି।'

ଅନୁପମା ଦେବୀ ଟିକେ ନରମି ଯାଇ କହିଲେ, "ନାଇଁ ସାର୍ । ଚା'ରେଡ଼ି ହେଇ ରହିଛି । ଆପଣ ଚା'ଟା ପିଇ ଦେଇ ସିଧା ଭୁବନେଶ୍ୱର ଚାଲି ଯାଆନ୍ତୁ। ଆମେ ଦି'ଜଣ ତ ମୋଟର ସାଇକେଲରେ ଆସିଛୁ। ସାଙ୍ଗ ହେଇ ରାତିରେ କେନ୍ଦୁଝର ଫେରିଯିବୁ।

ମନୋଜବାବୁଙ୍କ କାନ ଭାଁ ଭାଁ ହେଇଗଲା । ସେ ବୁଝି ପାରିଲେ ନାହିଁ। କାହା ସାଙ୍ଗରେ ଏ'ସୁନ୍ଦରୀ ତରୁଣୀ ଜଣକ ପୁଣି ମୋଟର ସାଇକେଲରେ ବସି ରାତିରେ ଯିବେ ?

ସେ ବାଧ୍ୟ ହେଇ ପଚାରିଦେଲେ, "କାହା ସାଙ୍ଗରେ ଆପଣ ରାତିରେ ଯିବେ ?'

"ଆମ କାର୍‌ରେ ଯିଏ ବସିଥିଲେ, ସେ ପରା ମୋ ମିଷ୍ଟର ପୋଲିସ ଇନ୍ସପେକ୍ଟର ବୀରେନ୍ ପଟ୍ଟନାୟକ। 'ପ୍ରଭା' ଅନୁଷ୍ଠାନର ସେ ହେଉଛନ୍ତି - ସର୍ବେସର୍ବା।"

ମନୋଜବାବୁ ଚମକି ପଡ଼ିଲେ, ତରବର ହେଇ  ସେ ଏଣିକି ତେଣିକି ଦେଖୁଥିଲେ। ମନେ ପକାଉଥିଲେ, ମୁଁ ବାଟରେ ଅନୁପମା ଦେବୀଙ୍କ ସହ କିଛି ଅବାନ୍ତର କଥା ହେଇ ନାହିଁ ତ !

ଏତିକି ବେଳେ ବୀରେନ୍ ବାବୁ ଚା'କପେ ଧରି ଆସି ମନୋଜବାବୁଙ୍କୁ ବଢ଼େଇ ଦେଲେ।

ଦୁଇ ଢୋକରେ ଗରମ ଚା'କପ୍‌ଟାକୁ ଶେଷ କରିଦେଲେ ମନୋଜବାବୁ। ଡ୍ରାଇଭର ଗାଡ଼ି ଷ୍ଟାର୍ଟ କରି ସାରିଥାଏ। ଖାଲି ଇସାରା ପାଇବା ମାତ୍ରେ ସେ ଦ୍ରୁତଗତିରେ କେନ୍ଦୁଝର ଆଡ଼କୁ ଚକ ଗଡ଼େଇ ଦେଲା।

୦୦୦





# ସୁଖ

ମଧୁମିତା ବି ଏଇ ସହରରେ ରହୁଛି, ତା'ସୁଖର ସଂସାରକୁ ନେଇ।

ଏ'ସମ୍ବାଦଟା ଏଭଳି ଅଚାନକ ଅରୁଣଙ୍କୁ ମିଳିଯିବ, ସେ କଳ୍ପନା କରିପାରୁ ନଥିଲେ। ତାଙ୍କ ପାଇଁ ତ ଇଏ ଗୋଟାଏ ବହୁତ ବଡ଼ ସୁ-ସମ୍ବାଦ।

'କିନ୍ତୁ ଇଏ କ'ଣ ସେହି ମଧୁମିତା ହୋଇଥିବ ?

ଯଦିଓ ସେ ମଧୁମିତା ହେଇଥାଏ, କୋଡ଼ିଏ ବର୍ଷ ପରେ ସେ କ'ଣ ଆଉ ସେଦିନର ମଧୁମିତା ହେଇ ରହିଥିବ ? ତା'ର ପିଲାଛୁଆ ହେଇ ଯାଇଥିବେ। ମୁହଁରେ ଭାଙ୍ଗ ପଡ଼ି ଆସିଥିବ। ଅରୁଣ ପରି ତା'ଆଖି ତଳେ କଳା ଦାଗ ବି ପଡ଼ି ଯାଇଥିବ। ସେ ଦିନର କଳା ମଚ ମଚ ବୃଟିରୁ କେତେଟା ନିଶ୍ଚୟ ଧଳା ଦିଶିବଣି ନିଶ୍ଚୟ।'

ଭାବନାର ସ୍ରୋତରେ ସେ ଭାସିଗଲେ।

- 'ନାଇଁ ମ। ସବୁ ସ୍ତ୍ରୀଲୋକଙ୍କର କ'ଣ ସେମିତି ହୁଏ ? ଜଣେ ଜଣେ ସ୍ତ୍ରୀଲୋକ ଚାଳିଶ ବର୍ଷରେ ବି ତରୁଣୀ ପରି ଦିଶନ୍ତି। ମା'ଝିଅ ଦି'ଭଉଣୀ ପରି ଲାଗନ୍ତି। ଏ'ସବୁ ନିର୍ଭର କରେ, ଶରୀର ଗଢ଼ଣ ଆଉ ଶରୀର ଯତ୍ନ ଉପରେ। ପୁଣି ବଂଶଗତ କାରଣରୁ ମଧ୍ୟ।'

- 'ମଧୁମିତାର ଗଢ଼ଣ ତ ଠିକ୍ କୁନି କଣ୍ଢେଇଟିଏ ପରି ଥିଲା। ଷାଠିଏ ବର୍ଷ ଯାଏ ବି ସେ ତରୁଣୀ ହେଇ ରହିପାରିବ। କାରଣ ତା'ବୋଉର ତ ଗୋଟାଏ ବି ବୃଟି ପାଚି ନଥିଲା। ତେଣୁ ଏବେ ବି ମଧୁମିତା ନିଶ୍ଚୟ ସେଦିନର ମଧୁମିତା ପରି ଦିଶୁଥିବ।'

ଅନେକ ସମୟ ଧରି ଅରୁଣ ମଧୁମିତାର ରୂପ, ଚେହେରା ଆଉ ତା'ପିଲାଛୁଆଙ୍କ କଥାକୁ କଳ୍ପନା କରୁଥିଲେ।

- "ଯଦି ହଠାତ୍ ମୁଁ ଯାଇ ତା'ଘରେ ପହଞ୍ଚିଯାଏ, ମଧୁମିତା କ'ଣ ମୋତେ ଚିହ୍ନି ପାରିବ ?"

- "ନିଜ ଆଡୁ ଯଦି ଆଗ ପରିଚୟ ଦିଏ, ତେବେ କ'ଣ ମୁଁ କହିପାରିବି ଯେ, ମୁଁ ଅରୁଣ ପଟ୍ଟନାୟକ, ଆର.ଏସ.ପି.ର ଚିଫ୍ ଅଫ୍ କମ୍ୟୁନିକେସନ୍

ଭାବରେ କାମ କରେ। ଆମ ଘରଟା ଆପଣଙ୍କ ପାଖ ଗାଁ ଗୋବିନ୍ଦପୁରରେ ।

- "ତା'ପରେ ଯଦି ସେ ଚିହ୍ନି ନପାରେ! ପଚାରିଦିଏ, କାହା ପାଖରେ କି କାମ ଥିଲା ଆପଣଙ୍କର ? ମିଷ୍ଟର ତ ନାହାନ୍ତି। ଆସିଲେ ମୁଁ ତାଙ୍କୁ କହିଦେବି। କିଛି କଥା ଥିଲେ କହି ଦେଇ ଯାଆନ୍ତୁ।"

- 'ତେବେ ମୁଁ ତା'ପର ଅଧ୍ୟାୟଟା କ'ଣ ଆରମ୍ଭ କରି ପାରିବି! କଦାପି ନୁହେଁ। ସେକଥା କହିବା ପାଇଁ ମୋର ସତ୍ ସାହସ ବି ନାହିଁ। କାରଣ ମୁଁ ହିଁ ଡାହାଣୀ ହେଇ ତା'ଦେହରେ ଲାଗିଥିଲି। ପୁଣି ଗୁଣିଆ ହେଇ ତାକୁ ଛଡ଼େଇ ଦେଇଥିଲି। ସେଇଥି ପାଇଁ ତ ମୁଁ ଆଉ ଦ୍ୱିତୀୟ ଥର ତା'ର ସମ୍ମୁଖୀନ ହେଇ ପାରି ନାହିଁ।

- 'ଯଦି ମଧୁମିତା ଏଇ ଅଳ୍ପ କଥାରେ ମୋତେ ଚିହ୍ନି ପାରିଲା, ତେବେ କଥାଟା ପୁଣି କେଉଁଠୁ ଆରମ୍ଭ କରିବି। ତା'ସହିତ ମୋ ବାହାଘର ପକ୍କା ହେଇ ଯାଇଥିଲା। ଅଳ୍ପ କେଇ ପଦ କଥାରେ ଆମେ ଦୁହେଁ ଦୁହିଁଙ୍କୁ ନିଜର କରି ଦେଇଥିଲୁ। ଘରକୁ ଫେରିଲା ବେଳେ ତା'ର ଯେଉଁ କଲେଜ ବେଳର ଫଟୋ ଖଣ୍ଡେ ନେଇ ଆସିଥିଲି, ତାକୁ ମୋ ଡାଏରୀରେ ଲୁଚାଇ ରଖିଥିଲି। ଏକୁଟିଆ ବେଳେ ଆଉ ରାତିରେ ଲୁଚେଇ ତାକୁ ଧରି କେତେ କଥା କହିଛି।

ସେ ମୋର ସବୁ କଥାରେ ସତେ ଯେମିତି ସମ୍ମତି ଜଣାଉଥିଲା। ଫଟୋ ଭିତରୁ ବାହାରି ପଡ଼ି ମୁରୁକି ହସି ଦେଉଥିଲା। ବେଳେ ବେଳେ ମୋତେ ଲାଗୁଥିଲା, ମଧୁମିତାର ଆଖିପତା ଦୁଇଟା ଯାକ ଉଠପଡ଼ ହେଉଛି।'

- ଟେଲିଫୋନର ରିଂ ଶବ୍ଦରେ ତାଙ୍କ ଭାବନାର ଖିଅ ଛିଡ଼ିଗଲା।

- "ଆରେ! ସସ୍ମିତ!"

- "ନମସ୍କାର। ମୁଁ ସସ୍ମିତ କହୁଛି। ଆପଣ ମୋତେ ଯେଉଁ ଦାୟିତ୍ୱ ଦେଇଥିଲେ, ଏବେ ତାଙ୍କ ଠିକଣାଟା ଟିପି ରଖନ୍ତୁ । ପ୍ରକୃତରେ ସେ ଆଇ.ଜି.ଏଚ. ରେ କାମ କରନ୍ତି ନାହିଁ ଆର.ଜି.ଏଚ.ରେ। ଡଃ. ଅବନୀକାନ୍ତ ମହାନ୍ତି। ଆଉ ତାଙ୍କର ଘର ନମ୍ବର ହେଲା - ଆର.ଜି.-୩୬, ବାସନ୍ତୀ ନଗର। ଆଜି ମୁଁ ତାଙ୍କରି ସହିତ କଥା ହେଉ ହେଉ ତାଙ୍କ ମିସେସ୍‌ଙ୍କ ନାଆଁଟା ମଧୁମିତା ବୋଲି ଜାଣିଲି। ସିଏତ ଆପଣଙ୍କୁ ଭଲକି ଜାଣନ୍ତି । ସୁବିଧା ଦେଖି ସେ ଆପଣଙ୍କୁ ଅଫିସରେ ଦେଖା କରିବେ ବୋଲି କହୁଥିଲେ।"

- "ଆପଣ ସେସବୁ କଥା କହି ନାହାନ୍ତି ତ ?"

- "ରାମ ରାମ। ସେଭଳି ସମ୍ବେଦନଶୀଳ କଥାକୁ କ'ଣ କିଏ କହିପାରେ ଯେ, ମୁଁ କହିଦେବି।"

- "ଆପଣଙ୍କ ଗାଆଁ ପାଖ ଲୋକ ବୋଲି ସେ କେବଳ କହୁଥିଲେ। ଆପଣଙ୍କ ନାଆଁ ସେ ଜାଣିଛନ୍ତି।"

- "ତେବେ ତ ରକ୍ଷା ପାଇଗଲି।"

- "ହଉ ଧନ୍ୟବାଦ । ରହୁଛି।"

ସସ୍ମିତବାବୁ ଫୋନ୍‌ରେ ଯେତିକି ସୂଚନା ଦେଲେ। ସେତିକିରେ ଅରୁଣର ଅବସ୍ଥା ଖରାପ।

ସେ ମନକୁ ମନ କହି ଚାଲିଲେ, "ବରଂ ଗୋଟାଏ ଦିଗରୁ ଭଲ ହେଲା,

ମଧୁମିତା ଭଲରେ ଅଛି, ଉପଯୁକ୍ତ ଡାକ୍ତର ବର ପାଇଛି । କାରଣ ମଧୁମିତା ଭଳି ସୁନ୍ଦରୀ ଆଉ ସୁଧାର ଝିଅ ଯଦି କୌଣସି ଅମଣିଷ ପାଖରେ ପଡ଼ି ଯାଇଥା'ନ୍ତା, କିମ୍ବା ଦୁଃଖରେ ଜୀବନ କଟାଉଛି ବୋଲି ମୁଁ ଶୁଣିଥା'ନ୍ତି, ତେବେ ମୁଁ ନିଜକୁ ଏତେ ସହଜରେ କ୍ଷମା ଦେଇପାରି ନଥା'ନ୍ତି। ତା'ର ସେ ଦୁଃଖ ପାଇଁ ମୁଁ ହିଁ ଦାୟୀ ହୋଇଥା'ନ୍ତି। କାରଣ ମୋ କଥାକୁ ମୁଁ ରକ୍ଷା କରି ପାରି ନଥିଲି।

- ଡାକ୍ତରବାବୁ ମୋ ବିଷୟରେ କ'ଣ ସବୁ ଶୁଣିଛନ୍ତି, କେଜାଣି। ଯଦି ମଧୁମିତା ମୋ ବିଷୟରେ ତାଙ୍କୁ କିଛି କହି ଦେଇଥିବ, ତେବେ ତ କାମ ସରିଲା।

- ଭଗବାନ ବଡ଼ ମହାନ। ସେ ତାକୁ ସୁଖରେ ରଖିଛନ୍ତି। ବହୁତ ଆଶ୍ୱସ୍ତି ଲାଗିଲା। ମଧୁମିତା ଯେଭଳି ଝିଅ, ସେ ଡାକ୍ତରବାବୁଙ୍କୁ ମଧ୍ୟ ସେହିଭଳି କରି ଦେଇଥିବ ନିଶ୍ଚୟ।

- ସମ୍ବିତ ମୋର ସବୋର୍ଡିନେଟ୍। ତାକୁ ମୋର ଜୀବନରେ ଘଟି ଯାଇଥିବା ଗୋଟାଏ ଦୁର୍ଘଟଣାଟିକୁ ଥରେ କହି ପକାଇଥିଲି। ଠିକ୍ କରିଛି ନା' ନାହିଁ, ଏବେ ବି ମୁଁ ଜାଣେନା। କେଉଁ ଏକ ଦୁର୍ବଳ ମୁହୂର୍ତ୍ତରେ ଇମୋସନ୍ ହେଇ ସତ କଥାଗୁଡ଼ାକୁ ତାକୁ କହୁ କହୁ କହି ପକାଇଥିଲି। ମୁଁ କ'ଣ ଜାଣିଥିଲି ଯେ, ସେ ଦି'ବର୍ଷ ଧରି ସେ କାହାଣୀକୁ ତା'ମନରେ ସାଇତି ରଖିଛି ବୋଲି।

- ତଥାପି ସମ୍ବିତ୍‌କୁ ପ୍ରଶଂସା କରିବାକୁ ପଡ଼ିବ। କାରଣ ସେ ହେଲା, ଆମର ଲୋକସଂପର୍କ ଅଧିକାରୀ। ବିଭିନ୍ନ ସମୟରେ ଅସଂଖ୍ୟ ସମସ୍ୟାକୁ ସେ ସମ୍ମୁଖୀନ ହେଉଛି। ତା'ଭିତରେ ମୋର କୋଡ଼ିଏ ବର୍ଷ ତଳର କେଉଁ ଏକ ଛୋଟିଆ କଥାଟାକୁ ଏତେ ଗୁରୁତ୍ୱର ସହ ଗ୍ରହଣ କରି ରଖିଛି ।

ପୁଣି ଥରେ ତାକୁ ଧନ୍ୟବାଦ ଦେବାକୁ ଇଛା ହେଲା । ସେ ଖୋଜା ଲୋଡ଼ା କରି ମଧୁମିତାର ଠିକଣା ଆଉ ତା'ସ୍ୱାମୀ ସଂପର୍କରେ ମଧ୍ୟ ଅନେକ ତଥ୍ୟ ସଂଗ୍ରହ କରି ପାରିଥିବାରୁ।

- ସମ୍ବିତ୍‌ର ବାହାଘର ଲାଗିଥାଏ । କେତେ ଝିଅ ସେତେବେଳକୁ ତା'ପାଇଁ ଲାଇନ୍‌ରେ ଥା'ନ୍ତି। କିନ୍ତୁ ତା'ବାହାଘର ଶେଷ ନିଷ୍ପତ୍ତି ସେ ମୋ ଉପରେ ଛାଡ଼ି ଦେଇଥାଏ।

- ଏହିଭଳି ଘଡ଼ିସନ୍ଧି ମୁହୂର୍ତ୍ତରେ ଦିନେ ସମ୍ବିତ୍ ବିଳମ୍ବିତ ରାତି ପର୍ଯ୍ୟନ୍ତ ମୋ ଚୌକି ଆଗରେ ବସିଥାଏ। ମୋ ମନେ ପଡ଼ିଗଲା, କୋଡ଼ିଏ ବର୍ଷ ତଳର କଥା। କହୁ କହୁ କହି ଚାଲିଲି। ଅତି ଆଗ୍ରହରେ ସେ ଶୁଣୁଥାଏ।

- ବୁଝିଲ ସମ୍ବିତ୍। ଆଜି ତମର ଯାହା ପରିସ୍ଥିତି, ଦିନେ ମୋର ବି ସେଇମିତି ହୋଇଥିଲା। ଥରେ ମଣିଷ କୌଣସି ଗୋଟାଏ ଝିଅକୁ ଭଲ ପାଇଗଲେ ନା, ତାକୁ ସଂସାରଟା ଖାଲି ଝାପ୍‌ସା ଝାପ୍‌ସା ଅନ୍ଧାର ଦିଶେ। ଆଉ ତା'ଭିତରେ ସେ ଝିଅଟା ବିଜୁଳି କନ୍ୟା ଭଳି ଝଲମଲ ହୁଏ। ତା'କଥା ମନେ ପଡ଼ିଗଲେ, ଛାତି ଧଡ ଧଡ ହେଇଯାଏ। ତା'ପରେ ସଂଜ୍ଞାତୀତ କିଛି ଗୋଟାଏ, ତାକୁ ପୁଲକିତ କରି ପକାଏ, ଅନନ୍ୟ ଶିହରଣରେ, ରାଶି ରାଶି ରୋମାଞ୍ଚକରେ, ପୁଣି କୁଢ଼ କୁଢ଼ ଆନନ୍ଦରେ ଦେହ ମନ ଫାଟି ପଡ଼େ। ବିପୁଳ ପୃଥିବୀଟା ଖାଲି ତା'ର ରୂପମୟ ହେଇଯାଏ। ତା'ସହିତ ମୁହାଁମୁହିଁ ହେବାର ଗୋଟାଏ ମହାର୍ଘ ସୁଯୋଗ ପାଇଁ ବାରମ୍ବାର ମନ

ବ୍ୟାକୁଳ ହେଇଉଠେ। ତା'ର ଚାଲି, କଥା କହିବାର ଢଙ୍ଗ, ମୁରୁକି ହସ, ଲାଜୁଆ ଚାହାଣୀ, ସବୁଗୁଡ଼ାକ ଭଲ ଲାଗେ। ସେ ପିନ୍ଧିଥିବା ପୋଷାକ, ସେ ବ୍ୟବହାର କରୁଥିବା ଚପଲ ବି ଅନନ୍ୟ, ଦୁର୍ଲଭ ବା ସିଙ୍ଗଲ ପିସ୍ ମନେ ହୁଏ। କିନ୍ତୁ ଥରେ ସେ ପ୍ରେମଟା ପାଣିଚିଆ ହେଇଗଲେ ନା, ହଠାତ୍ ସବୁ ଭଲ- ସବୁ ସୁନ୍ଦର ବିକୃତ ହେଇଯାଏ।

- ହଁ, ଯଦି ସେହି ଅକ୍ଷତ ପ୍ରେମଟା କୌଣସି କାରଣରୁ ହାତ ପାହାନ୍ତାରୁ ଦୂରେଇ ଯାଏ, ତା'ର ପରିଣତିଟା କିନ୍ତୁ ଅତ୍ୟନ୍ତ ସୁରକ୍ଷିତ ହୋଇଯାଏ।

- ମାନେ, ପ୍ରେମଟା 'ଏକ ଜାଗାପର୍ କଦମ୍ ତାଲ' କରୁଥାଏ। ହୃଦୟ ଭିତରେ ଲୁଚି ରହିଥିବା 'ମନ କମାଣ୍ଡର' ଆଦେଶ ଦେଲେ, ସେ ପୁଣି ସେଇଠୁ ନିର୍ଭିକ ସୈନିକ ଭଳି ଆଗେଇ ଚାଲେ। ଆଗରେ ଥିବା କୌଣସି ପ୍ରତିବନ୍ଧକ ଶତ୍ରୁପକ୍ଷର ପ୍ରତିରୋଧକୁ ସେ ଖାତିରି ନ କରି ମୃତ୍ୟୁର ସାମନା କରେ।"

- "ସାର୍! ଆପଣ ତ ଜଣେ ଭାବୁକଙ୍କ ଭଳି ପ୍ରେମର ସଂଜ୍ଞା କହି ଚାଲିଛନ୍ତି। କିନ୍ତୁ ...।" ସମ୍ବିତ୍ କହିଲେ ।

ମୁଁ ମୂଳକଥାରୁ ଅନ୍ୟ ଆଡ଼କୁ ଟିକେ ଚାଲିଗଲି। "ଶୁଣ ସମ୍ବିତ ! ମଧୁମିତା ସେଇମିତି ଦିନେ ମୋତେ ସଂପୂର୍ଣ୍ଣ ରୂପେ ଆକ୍ରାନ୍ତ କରିଥିଲା। ଆମର ପ୍ରେମ କିନ୍ତୁ ଆଜିଯାଏ, ଅକ୍ଷତ ଭାବେ ସୁରକ୍ଷିତ। ମାନସିକ ଯନ୍ତ୍ରଣାରୁ ରକ୍ଷା ପାଇବା ପାଇଁ ମୁଁ ତାକୁ ମୋ ହୃଦୟର କେଉଁ ଏକ କୋଣରେ ଚାପି ରଖି ଦେଇଛି। କେବେ କେମିତି ସେ ଚେଙ୍ଗ ଉଠିଲେ, ତାକୁ ବହଲେଇ ଦିଏ। ମୋର ଅସହାୟତାର ଆବରଣରେ ପୁଣି ତାକୁ ଢାଙ୍କି ରଖେ।"

- "ସାର୍, ମୁଁ ଏ'ଦିଗରେ କିଛି ସାହାଯ୍ୟ କରି ପାରିବି କି ?" ସମ୍ବିତ୍ ପଚାରିଲେ।

- "ପାରିବ । ମଧୁମିତାର ବର୍ତ୍ତମାନର ସ୍ଥିତି, ସେ କେଉଁଠି ବାହା ହେଇଛି ? କେମିତି ଅଛି ? କେବଳ ଏତିକି ମୋତେ ସୂଚନା ଯୋଗାଇ ଦେଲେ, ମୁଁ ଟିକେ ମାନସିକ ଯନ୍ତ୍ରଣାରୁ ମୁକ୍ତି ପାଇ ଯାଆନ୍ତି।

- ଆମ ଗାଆଁଠାରୁ ପାଞ୍ଚ କି.ମି. ଦୂର ଚମ୍ପାପୁର ଗାଆଁ। ସେହି ଗାଆଁ ମଝିରେ ମଧୁସୂଦନ ମହାନ୍ତିଙ୍କ ଘର। ସେ କଲିକତାରେ ଚାକିରି କରୁଥିଲେ। ସେଇଠି ଦୁର୍ଘଟଣାରେ ମୃତ୍ୟୁବରଣ କରି ସାରିଛନ୍ତି। ତାଙ୍କରି ଏକମାତ୍ର କନ୍ୟା ମଧୁମିତା।"

- "ଠିକ୍ ଅଛି ସାର୍! ମୁଁ ଆପଣଙ୍କ ଗାଆଁ ପାଖ ଲୋକଙ୍କ ଠାରୁ ତଥ୍ୟ ସଂଗ୍ରହ କରି ଆପଣଙ୍କୁ ମାଡାମ୍‌ଙ୍କର ଖବର ନିଶ୍ଚୟ ଜଣେଇ ଦେବି।" ସମ୍ବିତ୍ ପ୍ରତିଶ୍ରୁତି ଦେଇଥିଲା।

- ଆଜି ସେ ମଧୁମିତାର କେବଳ ସୂଚନା ଦେଇନାହିଁ, ସେ ସୁଖରେ ସଂସାର କରି ମୋର ଅତି ନିକଟରେ ରହୁଛି। ସେ ଖବର ବି ସମ୍ବିତ୍ ଦେଇ ପାରିଛି । ମନଟା ନାଚି ଉଠିଲା। ଏଣେ ଛାତି ଭିତରେ ଲୁଚି ରହିଥିବା 'ଅକ୍ଷତ ପ୍ରେମ ପକ୍ଷୀଟା ଫଡ୍ ଫଡ୍ ହେବାରେ ଲାଗିଲା।

- ମନକୁ ଟାଣ କରିନେଲି।

- ମୁଁ ତ ତା' ସହିତ କେବେ କିଛି ଖରାପ ଆଚରଣ ଦେଖାଇ ନାହିଁ। ଆମର

କେବଳ ମାନସିକ ସଂପର୍କ ଗଢ଼ି ଉଠିଥିଲା । ବେଶ୍ ଏତିକି । ବାହାଘରଟା ଠିକ୍ ହେଇ ଯାଇଥିଲା - ଆମେ ଦୁହେଁଯାକ ଖୁସିଥିଲୁ । ବୁଝାମଣା ଅଭାବରୁ ବାହାଘରଟା ହେଇ ପାରିଲା ନାହିଁ । ଏଥିରେ ଏତେ ବ୍ୟସ୍ତ ହେବାର କ'ଣ ଅଛି ? ଝିଅଟିଏ ଥିଲେ ତା'ପାଇଁ ମୋ ଭଳି କେତେ ପୁଅଙ୍କ ସହିତ କଥା ଚାଲେ, ଆଗେଇ ଯାଏ କାମ । ହଠାତ୍ ବନ୍ଦ ବି ପଡ଼ିଯାଏ । ମୁଁ ନିଜକୁ ନିଜେ ବୁଝେଇଲି ।

- ଆଗ ପଛ ବିଚାର କରିବାକୁ ସମୟ ନଦେଇ ଡ୍ରାଇଭରକୁ କହିଲି, ସିଧା ବାସନ୍ତୀ ନଗର ଘର ନମ୍ବର - ଆର.ଜି.-୩୭କୁ ଚାଲ ।

- ଗାଡ଼ି ଆଗେଇ ଚାଲିଲା । ମୁଁ ପୁଣି ଦ୍ୱନ୍ଦ୍ୱରେ ପଡ଼ିଗଲି । ଆଗରୁ ଫୋନ୍‌ଟିଏ କରି ତାଙ୍କ ଘରକୁ ଯାଇଥିଲେ, ଭଦ୍ରାମୀ ହୋଇଥା'ନ୍ତା । ଛାଡ, ଫୋନ୍ ନମ୍ବର ତ ମୋ ପାଖରେ ନାହିଁ । ଖୋଜାଖୋଜି କଲେ, ମିଳିଥା'ନ୍ତା । କିନ୍ତୁ ମଧୁମିତାକୁ ଅନେକ ବର୍ଷ ପରେ ପୁଣି ଥରେ ଦେଖି ପକାଇବାର ବ୍ୟଗ୍ରତା ଆଉ ସମୟ ନଷ୍ଟ କରିବାକୁ ଦେଲା ନାହିଁ ।

- ଖୁବ୍ ଶୀଘ୍ର ମଧୁମିତା ଦୁଆରେ ଗାଡ଼ି ଅଟକିଗଲା । କଲିଂ ବେଲ୍‌ଟାକୁ ଟିପି ଦେବାକୁ ଯାଉ ଯାଉ ଆଙ୍ଗୁଳିଗୁଡ଼ାକ କେମିତି ଦୁର୍ବଳ ହେଇ ଯାଉଥିବାର ଅନୁଭବ କଲି । କୋଡ଼ିଏ ବର୍ଷ ପରେ ମଧୁମିତାକୁ ଦେଖି ପକାଇଲେ, ହଠାତ୍ କ'ଣ କହିବି ? ତୁରନ୍ତ ନିଷ୍ପତ୍ତି ନେବାକୁ ପଡ଼ିଲା ।

- ଏଇଟା ତ ମୋର ସୌଜନ୍ୟ ଭେଟ । ଏଥିରେ ଏତେ ଫରମାଲିଟିଜ୍ କ'ଣ ?

ଏଥର କଲିଂ ବେଲଟା ଠିକ୍ ଭାବରେ ଟିପି ହେଇଗଲା । କିନ୍ତୁ କବାଟ ଖୋଲିବାର ବିଳମ୍ବ ମୋତେ ଚଞ୍ଚଳ କରି ପକାଉଥାଏ ।

- ଡାକ୍ତରବାବୁ କବାଟ ଖୋଲି ସ୍ୱାଗତ ଜଣାଇଲେ । ମୋ ନାଆଁଟା ଶୁଣି ପକାଇ ମୋତେ ଆନନ୍ଦରେ କୁଣ୍ଢେଇ ପକାଇଲେ । ସେଥିରେ ଅତ୍ୟନ୍ତ ନିବିଡ଼ତା ଥିଲା । ମୋ ଦେହ ପୁଲକିତ ହୋଇ ଉଠିଲା । ଯେଉଁ କୋଳ ମଧୁମିତାକୁ ଜାବୁଡ଼ି ଧରେ । ଆଜି ମୁଁ ସେଇଠି ।

- କଥାଟା କେଉଁଠୁ କିଏ ଆରମ୍ଭ କରିବ ? ଡାକ୍ତରବାବୁ କ'ଣ ମୋ ବିଷୟରେ- ମାନେ, ମଧୁମିତା ସହିତ ମୋର ବାହାଘର ଠିକ୍ ହୋଇଥିଲା, ଏ'କଥା ଜାଣିଥିବେ ? ଯଦି ମଧୁମିତା କହିଥିବ, ସେ କ'ଣ କହିଥିବ ଯେ, ଆମେ ଦୁହେଁ, ବାହାଘର ପାଇଁ ରାଜି ହୋଇଥିଲୁ । କହିଥିଲେ କହିଥିବ ।

କିନ୍ତୁ ଡାକ୍ତରବାବୁ କେବେ ବି ଜାଣି ନଥିବେ, ମୁଁ ମଧୁମିତାର ଫଟୋକୁ ଧରି ଅନେକ ମୁହୂର୍ତ୍ତ ମଧୁର ଯନ୍ତ୍ରଣା ପାଇଛି ବୋଲି ।

- ନୀରବତା ଭଙ୍ଗ କରି ଡାକ୍ତରବାବୁ କହିଲେ - "କ'ଣ ଚୁପ୍‌ଚାପ ବସିଗଲେ ଯେ, ମୁଁ ଆପଣଙ୍କ କଥା ସବୁ ଶୁଣିଛି ମିତାଠାରୁ । ଆପଣଙ୍କ ସହିତ ଭେଟ ହେଇ ମୁଁ ଆଜି ନିଜକୁ ଧନ୍ୟ ମନେ କରୁଛି ।"

- ମିତା, ହଁ ମଧୁମିତା ପଶି ଆସିଲା, ଉଭୟଙ୍କୁ ନମସ୍କାର ଜଣାଇ ଅତି ସାଧାରଣ ଭାବେ ପଚାରି ଦେଲା - "ଏବେ ମାଡାମ୍ କେମିତି ଅଛନ୍ତି ? ପିଲାମାନେ କ'ଣ ସବୁ କଲେଣି ? ଆପଣ ଏଠିକି କେବେଠୁ ଆସିଲେଣି ? ଆମ

ଠିକଣା କେମିତ ପାଇଲେ ? ଆମ କଥା ଆପଣଙ୍କର କେମିତି ମନେ ପଡ଼ି ଗଲାମ !"

- 'ଏତେ ଗୁଡ଼ାଏ ପ୍ରଶ୍ନ ଏକାଥରେ ଶୁଣୁଥିବା ବେଳେ ମୁଁ ସଂପୂର୍ଣ୍ଣ ଅନ୍ୟମନସ୍କ ଥିଲି । ସେଦିନ ମଧୁମିତା ନୀଳଶାଢ଼ୀ ପିନ୍ଧିଥିଲା, ଆଜି ବି ସେହି ନୀଳ ଶାଢ଼ୀ । ସେହି ନାକ, ସେହି ଲାଲ ଓଠ. କାହିଁ ଏତେ ବର୍ଷ ପରେ ବି ତା'ର ଗୋଟାଏ ହେଲେ ତ୍ରୁଟି ପାଚି ନାହିଁ। ସେଇମିତି ଆଖି ଦିଇଟା ଢଳ ଢଳ ହେଉଛି ।

ଅବଶ୍ୟ ଟିକିଏ ମୋଟେଇ ଯାଇଛି, କିନ୍ତୁ ସେଦିନର ମୋ ମଧୁମିତା, ଆଜିର ଡାକ୍ତରଙ୍କ ମିତା ଭିତରେ ବିଶେଷ କିଛି ଫରକ ନାହିଁ। ମନଟା ମୋର ଛନଛନ ହେଇଗଲା । ମିତା ମୋର ସୁଖରେ ଅଛି । ସ୍ୱାସ୍ଥ୍ୟ ପ୍ରତି ଉପଯୁକ୍ତ ଯତ୍ନ ବି ନେଇ ପାରୁଛି। ଭାରି ଖୁସି ହେଇଗଲି। ସେଦିନ ତା'ପ୍ରଶ୍ନର ଉତ୍ତର ଦେଲି କି ନାହିଁ, ଆଉ ମନେ ପଡୁ ନାହିଁ।

ଆଉ ଥରେ ମିତାର ଫୋନ୍ କଲ୍ ପାଇ ଡାକ୍ତରଙ୍କ ଘରକୁ ଗଲି । ଦୂରରୁ ଦେଖିଲି ସେଦିନର ପରିବେଶ ଥିଲା ଭିନ୍ନ । ଗୋଲାପୀ ଶାଢ଼ୀ ଖଣ୍ଡେ ପିନ୍ଧି ଏକୁଟିଆ ମିତା ମୋତେ ଅପେକ୍ଷା କରି ଲନ୍‌ରେ ଏପଟ ସେପଟ ହେଉଛି । ଚେୟାର ଦୁଇଟା ଆଉ ଟି'ପଏ ଖଣ୍ଡେ ଲନ୍ ମଝିରେ ପଡ଼ିଛି । ଦୂରରେ ଚାକରାଣୀ ଝିଅଟା ବଗିଚାରେ ପାଣି ଦେଉଛି । ମୋତେ ଦେଖି ପକାଇ ଦୂରରୁ ମଧୁମିତା ନମସ୍କାର ଜଣାଇଲା । ବସିବାକୁ ଚେୟାର ଦେଖାଇଦେଲା । ପଚାରି ଦେଲି - 'ଡାକ୍ତରବାବୁ ?'

- "ସେ ଦିଲ୍ଲୀକୁ ଟୁର୍‌ରେ ଯାଇଛନ୍ତି। ଆପଣ ବସନ୍ତୁ। ମୁଁ ଆଗ ଚା'କପେ ନିଜ ହାତରେ ତିଆରି କରି ନେଇ ଆସେ । ଗୋଟାଏ ଜରୁରୀ କାମ ଅଛି ଆପଣଙ୍କ ପାଖରେ ।"

ମଧୁମିତା ଘର ଭିତରକୁ ଚାଲି ଯାଉଥିଲା । ପଛରୁ ତାକୁ ମୁଁ ଚାହିଁ ରହିଥିଲି। ଲାଗୁଥିଲା - ସତେ ଯେମିତି ଗୋଲାପୀ ଶାଢ଼ୀ ପିନ୍ଧି ସ୍ୱର୍ଗର ପରୀଟିଏ ନାଚି ନାଚି ଚାଲି ଯାଉଛି ।

- "ଛି ! ଏବେ ପରା ସେ ଅନ୍ୟର ସ୍ତ୍ରୀ ହେଇ ସାରିଲାଣି। ତା'ରୂପ-ଯୌବନ ପ୍ରତି ମୋର ଦୃଷ୍ଟି ପକାଇବା ଉଚିତ ନୁହେଁ। ଲାଭ କ'ଣ ?" ମନକୁ ସାନ୍ତ୍ୱନା ଦେଲି।

- 'ମଧୁମିତାର ପୁଣି କି କାମ ମୋ ପାଖରେ ଥାଇପାରେ ? ସିଏ ତ ଯୋଗ୍ୟ ବର ପାଇଛି । ସେ ଚାହିଁଲେ ପୁଣି ରାଉରକେଲାର କେଉଁ କାମଟା କରି ନପାରିବେ ଯେ, ମଧୁମିତା ପୁଣି ମୋର ସାହାଯ୍ୟ ଆଶା କରୁଛି । ହେଇପାରେ, କାରଖାନାରେ ତା'ର କୌଣସି ସଂପର୍କୀୟର ଚାକିରି ପାଇଁ ମୋ ମାଧ୍ୟମରେ ପ୍ରେସର୍ ପକାଇପାରେ। କିମ୍ବା ତା'ବରର ଟ୍ରାନ୍ସଫର୍ ପାଇଁ କାହାକୁ ଟିକେ ଅନୁରୋଧ କରିବାକୁ କହିପାରେ । କିମ୍ବା ତା'ଝିଅର ବାହାଘର ପାଇଁ ପୁଅଟିଏ ଦେଖିବାକୁ ବି ଆଗତୁରା ମୋତେ କହିପାରେ। ସେ ନିଶ୍ଚୟ ଶୁଣିଥିବ, ମୋ ପୁଅଟି ମେଡ଼ିକାଲ କଲେଜରେ ପଢୁଛି। ତା'ଝିଅ ପାଇଁ ପ୍ରସ୍ତାବ ବି ଦେଇପାରେ।'

- ମୋ ଚିନ୍ତାର ଖିଅ ଛିଡ଼ିଗଲା। ଚା'କପ୍‌ଟିକୁ ଟ୍ରେରୁ ଆଣି ମୋ ହାତକୁ ବଢ଼େଇ ଦେଲା ମଧୁମିତା। ବସି ପଡ଼ିଲା ମୋ ପାଖରେ ପଡ଼ିଥିବା ଚେୟାର ଉପରେ ।

- ଅଳ୍ପ ଟିକେ ମୁରୁକି ହସି ଦେଲି, ତା'ମୁହଁକୁ ଚାହିଁ। ସେ ବି ଲାଜୁଆ ଆଖିରେ ମିଠା ହସଟିଏ ଉପହାର ଦେଲା।

ଚା'କପ୍‌ଟିକୁ ଚୁମି ଦେଇ ପଚାରିଲି, "ଆଉ କେମିତି ?"

- "ଆପଣଙ୍କ କଥା କୁହନ୍ତୁ ନା !" ସେ କହିଲା।

- "ପିଲାମାନେ କ'ଣ କରୁଛନ୍ତି ?" ମୁଁ ପଚାରିଦେଲି।

ଫିକା ପଡ଼ିଗଲା ମଧୁମିତାର ମୁହଁ। ତଳକୁ ଚାହିଁ କିଛି ସମୟ ନୀରବ ରହିଗଲା।

- "ତେବେ କ'ଣ ? ଆଚ୍ଛା ମୁଁ ତୁମ ମନରେ ଆଘାତ ଦେବାକୁ ଚାହୁଁ ନାହିଁ। ଯଦି ଉଚିତ ମନେ ନକରୁଛ, ତେବେ କହିବା ଦରକାର ନାହିଁ।

- "ହଁ, ମୁଁ ଯାହା ଦେଖୁଛି ତୁମେ ତ ଖୁବ୍ ମଜାରେ ଅଛ, ଡାକ୍ତର ବର, ପଇସାର ଅଭାବ ନାହିଁ। ଘରେ ଚାକର ବାକର। ମୋତେ ପାଇଥିଲେ, କିନ୍ତୁ ତୁମେ ଏତେ ସୁଖରେ ରହିପାରି ନଥା'ନ୍ତ ? କଦାପି ନୁହେଁ।"

- "ଅରୁଣାକୁ ଦେଖିଲେ, ତମେ ସେକଥା ଜାଣି ପାରିବ। ପିଲାଙ୍କ କାମରେ ଖଟି ଖଟି ସେ ଏବେ ବୁଢ଼ୀ ପରି ଦିଶିଲାଣି।" ମୁଁ ତାକୁ ବୁଝେଇବା ପାଇଁ କହି ଦେଲି।

- "ଆପଣ କେଉଁ ସୁଖ କଥା କହୁଛନ୍ତି ? ପ୍ରକୃତ ସୁଖ ତ ଥାଏ, ମ୍ୟାଡାମ୍‌ଙ୍କ ବୁଢ଼ୀ ହେଇ ଯିବାରେ। ଆପଣ ଜାଣନ୍ତି ନାହିଁ, ଏହି ଚାକଚକ୍ୟ ସଂସାର ଭିତରେ ମୁଁ କେମିତି ଜଳିପୋଡ଼ି ପ୍ରତିଦିନ ମରି ଚାଲିଛି ? ଏଇମିତି ଏଇମିତି କୋଡ଼ିଏ ବର୍ଷ ବିତିଗଲାଣି।"

ମଧୁମିତା ଆଖିରେ ଲୁହ ଜକେଇ ଆସୁଥିଲା। ଇଚ୍ଛା ହେଉଥିଲା, 'ତାକୁ ପାଖକୁ ଆଉଜେଇ ଆଣି ତା'ଆଖି ଲୁହକୁ ପୋଛି ଦିଅନ୍ତି। କିନ୍ତୁ ଅସମ୍ଭବ। ବର୍ତ୍ତମାନ ଡାକ୍ତରବାବୁଙ୍କର କେବଳ ସେ ଅଧିକାର ଅଛି।'

- କିଛି ସମୟ ପାଇଁ ଦୁହେଁ ନୀରବ ରହିଗଲୁ। ମଧୁମିତା କିଛି ଗୋଟାଏ କହିବାକୁ ଚେଷ୍ଟା କରୁଛି, କିନ୍ତୁ ପାରୁନାହିଁ।

ମୁଁ ପଚାରି ଦେଲି, "ତମର ଏମିତି କ'ଣ ଅସୁବିଧା ଅଛି ଯେ,ସେଇଟା ଦୂର କରି ହେଉନାହିଁ ?"

"ସବୁ ପ୍ରକାର ଚେଷ୍ଟା ଆଉ ପରୀକ୍ଷା ସରିଛି। ମୋର କିନ୍ତୁ କୌଣସି ପ୍ରୋବ୍ଲେମ୍ ନାହିଁ। ସବୁ ଅସୁବିଧା ଡାକ୍ତରବାବୁଙ୍କ ପାଖରେ।"

- "ତେବେ ?"

- "ଡାକ୍ତରଙ୍କ ଜାଗାରେ ତମେ ଯଦି ଥା'ନ୍ତ, ଏତେ ବେଳକୁ ତୁମର ପୁଅ ସାଙ୍ଗରେ ମୋ ପୁଅ ବି କଲେଜରେ ପଢୁଥା'ନ୍ତା।"

ମଧୁମିତାର ଅନ୍ତର୍ଭେଦୀ ବାଣ ମୋ ହୃଦୟରେ ଟପ୍ କରି ଗଳିଗଲା। ଗମଗମ ହେଇ ମୋ ଦେହରୁ ଝାଳ ବହି ପଡ଼ିଲା। ଚା'କପ୍‌ଟା ମୋ ହାତରୁ ତଳେ ଖସି ପଡୁ ପଡୁ ଟି'ପଏ ଉପରେ ଢାଳି ହେଇ ପଡ଼ିଲା। ଗଳାଟା ଶୁଖି ଯାଉଥିଲା। ପାଟିରୁ ବାହାରି ପଡ଼ିଲା - "ମୋତେ ପାଣି ଗ୍ଲାସେ ଦରକାର।"

୦୦୦



# ପୁତ୍ରଲାଭ

କମଳେଶଙ୍କର ମାନସିକ ସ୍ଥିତି ପରୀକ୍ଷା କରୁଥିଲେଡକ୍ଟର ମିଶ୍ର। ମନେ ମନେ କହିଲେ - 'ଆଶ୍ଚର୍ଯ୍ୟର କଥା, କମଳେଶ ଅତ୍ୟନ୍ତ ପ୍ରଫୁଲ୍ଲ ଦିଶୁଛନ୍ତି। କଥାବାର୍ତ୍ତା ବି ନର୍ମାଲ। ତେବେ କ'ଣ ସେ ଜାଣି ନାହାନ୍ତି ଯେ, ଏଇଟା ହେଉଛି, ତାଙ୍କର ଲାଷ୍ଟ ଷ୍ଟେଜ୍। ଅତି ବେଶିରେ ଆଉ ମାତ୍ର ଦିନ କେଇଟା।

- ତାଙ୍କ ପରିବାର ଲୋକେ ବରଂ ଠିକ୍ କରିଛନ୍ତି। ରୋଗୀକୁ ତା'ର ରୋଗର ଭୟାବହତା ସଂପର୍କରେ ଜଣାଇ ଅଧିକ ଆତଙ୍କିତ କରିବାର ମୂଲ୍ୟ କିଛି ନାହିଁ। ଯେତିକି ଦିନ ସେ ବଞ୍ଚିବେ, ଆନନ୍ଦରେ ବଞ୍ଚନ୍ତୁ; ଏତିକି ତ ଆମେ ଚାହୁଁ।'

କମଳେଶ ବିଛଣାରୁ ଉଠି ବସିଲେ। ନର୍ସ ଗୋଟାଏ ସିରିଞ୍ଜ ପ୍ରସ୍ତୁତ କରୁଥିଲେ ଇଂଜେକ୍ସନ ପାଇଁ। ବେଶ୍ ନିର୍ଭୟରେ ସେ ହାତ ବଢ଼େଇ ଦେଲେ। ଡାକ୍ତରବାବୁ ପଚାରିଲେ - "କ'ଣ କମଳେଶ ବାବୁ! ଟିକେ ଭଲ ଲାଗୁଛିତ ? ମ୍ୟାଡାମ୍ କୁଆଡ଼େ ଗଲେ ? ଆପଣଙ୍କର ଆଉ ଗୋଟିଏ ପରୀକ୍ଷା ହେବ! ଏ'ପ୍ରେସ୍କ୍ରିପ୍ସନଟି ରଖନ୍ତୁ। ଆଉ କେହି ଆସିଲେ, ତାଙ୍କ ହାତରେ ଏ'ମେଡ଼ିସିନଗୁଡ଼ିକୁ ମଗେଇ ଆଣି ପାଖରେ ରଖିଥିବେ।"

ଡାକ୍ତରବାବୁ କାଗଜ ଖଣ୍ଡକ ବଢ଼େଇ ଦେଇ ଚାଲିଯିବାକୁ ବାହାରିଥିଲେ। କମଳେଶ ନରମ ଗଳାରେ କହିଲେ - "ସାର୍! ମୋର ଗୋଟିଏ ଅନୁରୋଧ ରକ୍ଷା କରି ପାରିବେ।"

- "ନିଶ୍ଚୟ, କ'ଣ କହନ୍ତୁ ?"

- "ସାର୍! ମୋର ସ୍ତ୍ରୀ ସନ୍ଧ୍ୟା ବର୍ତ୍ତମାନ ମନ୍ଦିରକୁ ଯାଇଥିବ। ଠାକୁରଙ୍କୁ ପ୍ରାର୍ଥନା କରୁଥିବ। ମୁଁ କେମିତି ଶୀଘ୍ର ଆରୋଗ୍ୟ ଲାଭ କରି ଘରକୁ ଫେରେ। କିନ୍ତୁ ବିଚାରୀ ମୋର ବ୍ରେନ୍ କ୍ୟାନସର ଲାଷ୍ଟ ଷ୍ଟେଜ ବୋଲି ମଧ୍ୟ ଜାଣେ ନାହିଁ। ଆପଣ ଦୟାକରି ତାକୁ ମୋ ରୋଗ ବିଷୟରେ କିଛି ଜଣେଇବେ ନାହିଁ। ସିଷ୍ଟରମାନଙ୍କୁ ମଧ୍ୟ ମନା କରିଦେବେ, ସେମାନେ ମୋ ସ୍ତ୍ରୀ ସନ୍ଧ୍ୟାକୁ କିଛି କହିବେ ନାହିଁ।"

- ହଁ, ସାର! ପ୍ରେସ୍କ୍ରିପ୍ସନ୍‌ଟାକୁ ମଧ୍ୟ ଆପଣ ରଖିଥା'ନ୍ତୁ। ଯାହା ଔଷଧ ଦରକାର ଆପଣ ମଗେଇ ଦେବେ। ମୁଁ ସବୁ ଟଙ୍କା ଆପଣଙ୍କୁ ଦେଇ ଦେବି।

- ମୋ ସ୍ତ୍ରୀ ସନ୍ଧ୍ୟା ବଡ଼ ଦୁଃଖୀ ଝିଅଟିଏ ସାର୍! ମୋ କଥା ଶୁଣିଲେ ନାଃ ସେ ହାର୍ଟଫେଲ୍ କରିଯିବ। ଯଦିବା ବଞ୍ଚିରହେ, ତା'ର ଶୁଖିଲା ହତାଶ ମୁହଁକୁ ଦେଖି ମୁଁ ସହିପାରିବି ନାହିଁ। ମୁଁ ବି ମରିଯିବି। ମୋ ଅନୁରୋଧ ରକ୍ଷା କରିବେ ସାର।"

ଡାକ୍ତର ମିଶ୍ର ତାଙ୍କ ମୁହଁକୁ ଚାହିଁ ମୂକ ଭଳି ସବୁ ଶୁଣୁଥିଲେ। ନର୍ସ ଜଣକ କେତେବେଳେ ଡାକ୍ତରଙ୍କ ମୁହଁକୁ ତ ଆଉ କେତେବେଳେ କମଳେଶଙ୍କ ମୁହଁକୁ ଚାହୁଁଥିଲେ। ଡାକ୍ତରବାବୁଙ୍କ ଆଦେଶକୁ ଅପେକ୍ଷା ମଧ୍ୟ କରି ରହିଥିଲେ।

ଡାକ୍ତରବାବୁ କମଳେଶଙ୍କୁ ସାନ୍ତ୍ୱନା ଦେଇ କହିଲେ, "ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ। ସବୁବେଳେ ମନକୁ ପ୍ରଫୁଲ୍ଲ ରଖନ୍ତୁ। ଘର ଚିନ୍ତା କିମ୍ବା ଦେହ ଚିନ୍ତା ମୋଟେ କରନ୍ତୁ ନାହିଁ। ଘର ପାଇଁ ଆପଣଙ୍କ ପତ୍ନୀ ଅଛନ୍ତି। ଆପଣଙ୍କ ପାଇଁ ଆମେ ଅଛୁ। ମୁଁ ପ୍ରତ୍ୟେକ ଦିନ ଆସି ଆପଣଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରି ଯାଉଥିବି। ଯାହା ଅସୁବିଧା ହେବ. ଆପଣ ମୋତେ କହିବେ। ସିଷ୍ଟର ତମର ଔଷଧପତ୍ର କିଣି ଆଣିବେ।"

ନର୍ସ ଜଣକ ପ୍ରେସ୍‌କ୍ରିପ୍‌ସନ୍‌ଟି ନେଇ ନିଜ ପକେଟରେ ରଖିଲେ। କମଳେଶଙ୍କର ବିଛଣାକୁ ଟିକେ ସଜାଡ଼ି ଦେଲେ। ଡାକ୍ତରବାବୁ ପଛକୁ ଚାହିଁ ଚାହିଁ ବାହାରକୁ ଚାଲିଗଲେ। ଯିବା ସମୟରେ ସେ ଭାବୁଥିଲେ - 'କମଳେଶବାବୁ ଏଇ ମାତ୍ର ତିନି ଦିନ ହେଲା, ଏଇଠି ଆଡମିଶନ ହେଇଛନ୍ତି। ବିଭିନ୍ନ ପ୍ରକାର ଟେଷ୍ଟ୍ ହେଲା ପରେ ଜଣାପଡ଼ିଛି, ତାଙ୍କର ବ୍ରେନ୍ କ୍ୟାନସର୍, ଏକଦମ ଶେଷ ଅବସ୍ଥାରେ ପହଞ୍ଚି ଯାଇଛି। ଏକଥା ତାଙ୍କୁ ଆମେ ଜଣାଇ ନଥିଲୁ। ଆବଶ୍ୟକ ଚିକିତ୍ସା ପାଇଁ ଏବଂ ସମସ୍ତ ପ୍ରକାର ଔଷଧ ଖର୍ଚ୍ଚ କରିବାକୁ ତାଙ୍କ ବଡ଼ ଭାଇ ତ ପ୍ରସ୍ତୁତ ଅଛନ୍ତି। କିନ୍ତୁ କମଳେଶଙ୍କୁ ଏକଥାଟି ନ ଜଣାଇବା ପାଇଁ ସମସ୍ତେ ବିନୀତ ଅନୁରୋଧ କରି ଯାଇଥିଲେ।

- ଗତକାଲି କମଳେଶଙ୍କର ବଡ଼ ଭାଇ ମୋ ଚାମ୍ବରକୁ ଆସି ସ୍ୱତନ୍ତ୍ର ଭାବେ ଅନୁରୋଧ କରିଥିଲେ - "କମଳେଶର ବର୍ତ୍ତମାନ ଯାହା ଅବସ୍ଥା, ଏ'କଥାଟା ଯେମିତି ମୋ ବାପା ନ ଜାଣନ୍ତି। ସେ ଆପଣଙ୍କୁ ଦେଖା କରିବାକୁ କାଲି ଆସିବେ। ବାପା ଜଣେ ହୃଦରୋଗୀ। କମଳେଶକୁ ବହୁତ ଭଲ ପାଆନ୍ତି। ବାହାର ଲୋକଙ୍କ କଥା ଶୁଣି ସେ ଏକପ୍ରକାର ରୋଗୀ ପାଲଟି ଯାଇଛନ୍ତି। ମୁଁ ତାଙ୍କୁ ବୁଝେଇ ଦେଇଛି। ଡାକ୍ତରବାବୁ କହିଛନ୍ତି - "କମଳେଶ ଖୁବ୍ ଶୀଘ୍ର ଭଲ ହେଇଯିବ। ଆପଣ ଦୟା କରି ମୋ ପାଇଁ ଟିକେ ମିଛ କହିବେ। ତା'ର ସେମିତି ବିଶେଷ କିଛି ହେଇନାହିଁ।"

ମୁଁ ବୁଝେଇଥିଲି - 'ରୋଗୀର ଭଲ ପାଇଁ ଏବଂ ଲୋକଙ୍କର ମଙ୍ଗଳ ପାଇଁ ଆମେ ଯେତେଦୂର ସମ୍ଭବ ମିଥ୍ୟାର ଆଶ୍ରୟ ମଧ୍ୟ ନେଇଥାଉଁ। ବେଳେବେଳେ ସେହି କଥା ଓଲଟା ଫଳ ଦେଇଥାଏ। ତଥାପି ଆପଣଙ୍କ ବାପାଙ୍କର ସ୍ୱାସ୍ଥ୍ୟଗତ କାରଣରୁ ମୁଁ ମିଛ ପଦେ କହିଦେବି। ଆପଣ ବ୍ୟସ୍ତ ନହେଇ ଘରକୁ ଯାଆନ୍ତୁ। ସବୁ ଠିକ୍ ଠାକ୍ ହେଇଯିବ।'

- କିନ୍ତୁ ଏ' କି ଆଶ୍ଚର୍ଯ୍ୟର କଥା! ନିଜେ କମଳେଶ କହୁଛନ୍ତି, ତାଙ୍କୁ କ୍ୟାନସର ହେଇଛି। ପୁଣି ଏଇଟା ଲାଷ୍ଟ ଷ୍ଟେଜ୍। ଏତିକି ଜାଣିଲା ପରେ ମଧ୍ୟ ସେ ଛଳନାର ଆଶ୍ରୟ ନେଇ ପତ୍ନୀକୁ ଲୁଚେଇ ରଖିବାକୁ ପ୍ରୟାସ କରୁଛନ୍ତି। ମନେ

ହୁଏ, ତାଙ୍କ ପରିବାରର ସମସ୍ତ ସଦସ୍ୟ ଅସଲ କଥାଟିକୁ ଜାଣି ସାରିଛନ୍ତି। କେବଳ ସମସ୍ତେ ସମସ୍ତଙ୍କୁ ଲୁଚାଇବାରେ ଲାଗିଛନ୍ତି।'

ଡାକ୍ତରବାବୁ ଚାଲିଗଲା ପରେ କମଳେଶ ବଡ଼ ବିକଳ ସ୍ୱରରେ କହିଲେ - "ସିଷ୍ଟର! ଡାକ୍ତରବାବୁ ବଡ଼ ଦୟାଳୁ ମଣିଷନା"!

ମୋ ରୋଗ ତ ଭଲ ହେବ ନାହିଁ। ଆପଣ ଟିକେ ଦୟା କରି ଶୁଣିବେ, ମୋ ସ୍ତ୍ରୀ ସନ୍ଧ୍ୟାର ଦୁଃଖ କାହାଣୀ ?"

ଅନିଚ୍ଛା ସତ୍ତ୍ୱେ ନର୍ସ ଜଣକ କହିଲେ - "ଆପଣ ତ ନିଜେ ଅସୁସ୍ଥ। ସ୍ତ୍ରୀଙ୍କ ଦୁଃଖ କହି ଲାଭ କ'ଣ ? ହଉ କ'ଣ କହିବାର ସଂକ୍ଷିପ୍ତରେ କୁହନ୍ତୁ।"

"ସିଷ୍ଟର! ବିଚାରୀ ସନ୍ଧ୍ୟା ପିଲାବେଳୁ ତା'ବାପା ମାଆଙ୍କୁ ହରେଇଥିଲା। ଖାଲି ଦୁଃଖରେ ଦୁଃଖରେ ତା'ଜୀବନ ବିତିଛି। ମୁଁ ସିନା ଥିଲାବାଲା ଘରେ ଜନ୍ମ ହେଇଥିଲି। କିନ୍ତୁ ମୋର ପୌରୁଷତ୍ୱରେ ଥିଲା ପ୍ରଶ୍ନବାଚୀ। ସେଇଥିପାଇଁ ମୋତେ କେତେ ଯେ ମାନସିକ ଯନ୍ତ୍ରଣା ଭୋଗିବାକୁ ପଡ଼ିଛି, ସେକଥା କେବଳ ମୁଁ ଜାଣେ। ଶେଷରେ ସନ୍ଧ୍ୟା ସବୁକଥା ଜାଣି ମଧ୍ୟ ମୋର ଜୀବନ ସାଥୀ ହେଲା। ମୋ ଦୁଃଖରେ ସିଏ ହିଁ କେବଳ ଦୁଃଖୀ ହେଲା। ସତରେ ସିଷ୍ଟର! ମୁଁ ତାକୁ ସାମାନ୍ୟତମ ସୁଖ ଦେଇ ପାରିନାହିଁ। ବରଂ ସେ ମୋର ସୁଖ ପାଇଁ ସବୁ କିଛି ତ୍ୟାଗ କରିଛି। ମୁଁ ତା'ପାଖରେ ଯୁଗ ଯୁଗ ପାଇଁ ଋଣୀ ହେଇ ରହିଯାଇଛି ସିଷ୍ଟର। ଜୀବନର ଶେଷ ମୁହୂର୍ତ୍ତରେ ଆହୁରି ଅଧିକ ଦୁଃଖ ଦେଇ ସନ୍ଧ୍ୟାକୁ ଯନ୍ତ୍ରଣା ଜର୍ଜରିତ କରିବାକୁ ମୁଁ ଚାହୁଁନାହିଁ।"

ନର୍ସ ଜଣକ କମଳେଶର କଠୋର ସତ୍ୟ ସ୍ୱୀକାରୋକ୍ତି ଶୁଣି ଆଶ୍ଚର୍ଯ୍ୟ ହେଇ ଯାଇଥିଲେ। ସେ ଲକ୍ଷ୍ୟ କରୁଥିଲେ, ତାଙ୍କ ଆଖି ଗୁଡ଼ାକ ବର୍ତ୍ତମାନ କେମିତି ଅଲଗା ଅଲଗା ଦିଶୁଛି। ଜଣା ପଡୁଥିଲା - କମଳେଶ ମସ୍ତିଷ୍କରେ ଅତ୍ୟଧିକ ଯନ୍ତ୍ରଣା ଅନୁଭବ କରୁଛନ୍ତି। ସେ ତାଙ୍କୁ ବେଡ଼୍‌ରେ ଶୁଆଇ ଦେଇ ଆଉ ଗୋଟିଏ ଇଂଜେକସନ୍ ଦେଇ ଦେଲେ।

ସନ୍ଧ୍ୟା ହସ୍ପିଟାଲରେ ପହଞ୍ଚି ଦେଖିଲେ, କମଳେଶ ବେଶ ଆରାମରେ ଶୋଇ ପଡ଼ିଛନ୍ତି। ପୁଅ ନରେଶ ମଧ୍ୟ ସାଙ୍ଗରେ ଆସିଛି। ସେ ବାହାରେ ରହି ପାଠ ପଢ଼େ। ବାପାଙ୍କର ଦେହ ଖରାପ ଖବର ପାଇ ଛୁଟି ନେଇ ଆସିଛି। ମାଆ-ପୁଅ ଦୁହେଁ ପରସ୍ପରକୁ ଚାହିଁଲେ। ନରେଶ ବାପାଙ୍କ ଗୋଡ଼ ପାଖରେ ବସି ପଡ଼ି ପାଦ ଦୁଇଟିକୁ ଟେକି ଦେଇ ନିଜ କୋଳରେ ରଖି ଆଉଁସିବା ଆରମ୍ଭ କଲା।

ସନ୍ଧ୍ୟା ଆଖିରେ ଲୁହର ଝରଣା। ବାଟରେ ସେ ପୁଅକୁ ସବୁକଥା ଖୋଲାଖୋଲି କହି ଦେଇଛି। ପୁଣି ବାରମ୍ବାର ତାଗିଦ କରି ଦେଇଛି, ଯେ କୌଣସି ପରିସ୍ଥିତିରେ ବାପାଙ୍କୁ ତୁ କହିବୁ ନାହିଁ ଯେ, "ତୁମକୁ ବ୍ରେନ୍ କ୍ୟାନସର ହେଇଛି। ସେଇଟା ପୁଣି ରୋଗର ଲାଷ୍ଟ ଷ୍ଟେଜ୍।"

କମଳେଶ ଆଖି ଖୋଲିଲେ। ପୁଅ ନରେଶକୁ ଦେଖି ସେ ନୀରୋଗ ମଣିଷ ପରି ହସି ହସି ତା'ର କୁଶଳ ପଚାରି ବୁଝିଲେ। ତାକୁ ପରାମର୍ଶ ଦେଲେ, "ପଢ଼ାପଢ଼ିରେ ମନ ଦେଇଥିବୁ। ମୋ ଦେହ କଥା ମୋଟେ ଚିନ୍ତା କରିବୁ ନାହିଁ।

ଡାକ୍ତରବାବୁ କହୁଥିଲେ, ମୋତେ ସାଧାରଣ ଜ୍ୱର ହେଇଛି । ଆଉ କେଇଦିନ ପରେ ମୁଁ ଭଲ ହେଇ ଘରକୁ ଫେରିଯିବି।

ଆଉ ତୋର ପରୀକ୍ଷା କେମିତି ହେଇଛି ? ସାଙ୍ଗମାନଙ୍କ ସହିତ ମିଳିମିଶି ଚଳୁଥିବୁ। ଗଣ୍ଡଗୋଳରେ ମୋଟେ ମିଶିବୁ ନାହିଁ। ହଁ ଶୁଣ, ଆଜିକାଲି ଚାରିଆଡ଼େ ପ୍ରଚାର ଚାଲିଛି, ଚାକିରି ନାହିଁ। ସେଥିରେ ତୁ ଭାଙ୍ଗି ପଡ଼ିବୁ ନାହିଁ। କୌଣସି ଗୋଟାଏ ସ୍ପେଶାଲ କୋର୍ସ କରିଦେଲେ, ତୋ' ପାଇଁ ଚାକିରି ଥୁଆ। ତୋ' ମନୋବଳକୁ ଟାଣ କରିବା ପାଇଁ ମୁଁ କ'ଣ କରିଛି ଜାଣୁ ? ତୋ ପିଲା ଦିନେ ମୁଁ ଗୋଟାଏ ଏଜୁକେଶନ ପଲିସି କରି ଦେଇଥିଲି। ସେଇଟା ମେଚ୍ୟୁର ହେଇ ଯାଇଛି। ତିନି ଲକ୍ଷ ଟଙ୍କା ମିଳିବ। ସେଥିରେ ତୁ ଫରେନ୍ ଯାଇ ସ୍ପେଶାଲ କୋର୍ସ କରି ପାରିବୁ।"

"ତମେ ଏତେ ଗୁଡ଼ାଏ କଥା କାହିଁକି କହୁଛ ? ଡାକ୍ତରବାବୁ ପରା କହି ଯାଇଛନ୍ତି, ତୁମକୁ ଯଥେଷ୍ଟ ବିଶ୍ରାମ ଦରକାର" - କମଳେଶଙ୍କ କଥା ମଝିରେ ସନ୍ଧ୍ୟା କହି ପକାଇଲେ।

ପୁଣି କମଳେଶ କହିଲେ, "ସନ୍ଧ୍ୟା ! ମୋର କ'ଣ ହେଇଛି କି ବିଶ୍ରାମ ନେବି ? ଏବେ ମୋତେ ତ ଭାରି ଆରାମ ଲାଗୁଛି। ଦେହରେ କୌଣସି ପ୍ରକାର ଯନ୍ତ୍ରଣା ନାହିଁ। ଅନେକ ଦିନ ପରେ ମୋ ପୁଅ ନରେଶ ଆସିଛି, ମନ ଖୋଲି ତା'ସାଙ୍ଗରେ ଦି'ପଦ କଥା ହୁଏ।"

ନର୍ସ ଜଣକ ଦେଖିଲେ କମଳେଶ ବେଶ ସ୍ମାର୍ଟ ହେଇ ଉଠିଛନ୍ତି। ସେ ସନ୍ଧ୍ୟା ଉଦ୍ଦେଶ୍ୟରେ କହିଲେ, "ମ୍ୟାଡାମ୍ ! ଆପଣ ତିନି ଜଣ ବସି ଗପସପ ହୁଅନ୍ତୁ। ମୁଁ ଡାକ୍ତରଙ୍କ ଚାମ୍ବରରେ ଅଛି। ଦରକାର ହେଲେ, ମୋତେ ଡାକିବେ।"

କ୍ୟାବିନ ଦୁଆର ଖୋଲି ନର୍ସ ଜଣକ ବାହାରକୁ ଚାଲିଗଲେ। କମଳେଶ ମନଖୋଲି ନରେଶ ସହିତ କଥାବାର୍ତ୍ତା କଲେ। ସନ୍ଧ୍ୟା ଅନୁଭବ କଲେ, "ଆଜି କମଳେଶ ବହୁତ ଖୁସି ଅଛନ୍ତି। ହୃଦୟ ଖୋଲି ହସୁଛନ୍ତି। ପିଲା ଦିନର କେତୋଟି ମଜା ଘଟଣାକୁ ମନେ ପକେଇ ନରେଶକୁ ହସେଇବାକୁ ଚେଷ୍ଟା କରୁଛନ୍ତି।

- ସତରେ କେତେ ନିରୀହ ଆଉ ସରଳ ହୃଦୟର ମଣିଷ ଏହି କମଳେଶ। ସେ ଜାଣନ୍ତି ନାହିଁ, ଅଳ୍ପ କେଇଟା ଦିନରେ ସେ ଆମକୁ ଛାଡ଼ି ଚାଲିଯିବେ। ଏକଥା ଯଦି ସେ ଜାଣି ପାରନ୍ତି, ତାଙ୍କର ଅବସ୍ଥା କ'ଣ ବୋଲି କ'ଣ ହେଇଯିବ ?

- ଏହି ହସକୁରା ମଣିଷ ସହିତ ମୁଁ ଯେଉଁ ବିଶ୍ୱାସଘାତକତା କରିଛି, ଏଥିପାଇଁ କ'ଣ ମୋତେ ଭଗବାନ କ୍ଷମା ଦେଇ ପାରିବେ ? ତଥାପି ମୁଁ ତାଙ୍କୁ ସବୁକଥା ଖୋଲି କହିଦେବି। ସେ ଯଦି ମୋ ପାପ କର୍ମକୁ ଶୁଣି ହତ୍ୟା କରି ଦିଅନ୍ତି, ତେବେ ମୁଁ ତାଙ୍କ ହାତରେ ମୁକ୍ତି ପାଇଯିବି। ନଚେତ୍ ତାଙ୍କ ଅନ୍ତେ ମୋତେ ସାରା ଜୀବନ ଅନୁତାପ କରି ଜଳିବାକୁ ପଡ଼ିବ। ପାପକୁ ଲୁଚେଇ ରଖିଲେ, ଆର ଜନ୍ମକୁ ପୁଣି ଭୋଗ ମୋତେ ହିଁ କରିବାକୁ ପଡ଼ିବ।"

କମଳେଶ ନରେଶକୁ ପାଇ ଖୁସିରେ ଗପି ଚାଲିଛନ୍ତି। ସତରେ ଯେମିତି ତାଙ୍କର କିଛି ହେଇନାହିଁ।

ସନ୍ଧ୍ୟାର ମନେ ପଡ଼ିଗଲା, ସେ ଦିନର ଦୁର୍ଘଟଣା କଥା।

ହଁ, ଦୁର୍ଘଟଣା ନୁହେଁ ତ ଆଉ କ'ଣ ?

- ଶ୍ରବଣ କୁମାରକୁ ରାଜା ଦଶରଥ ବାଣ ମାରି ହତ୍ୟା କଲେ। ସେ ଜାଣତରେ ହେଉ ବା ଅଜାଣତରେ ହେଉ । ତାଙ୍କୁ ହତ୍ୟାଦୋଷ ତ ଲାଗିଥିଲା। ଅନ୍ଧମୁନୀ ଏବଂ ତାଙ୍କର ପତ୍ନୀ ରାଜାଙ୍କୁ କ୍ଷମା ଦେଇ ପାରିଲେ ନାହିଁ। ଅଭିଶାପ ଦେଲେ, "ମହାରାଜ ! ପୁତ୍ରକୁ ହରାଇ ଆମେ ଯେମିତି ବିକଳରେ ପ୍ରାଣ ହରାଉଛୁ, ତୁମେ ବି ସେଇମିତି ପୁତ୍ର ଶୋକରେ 'ପୁତ୍ର ପୁତ୍ର' ହେଇ ପ୍ରାଣ ହରାଇବ। ସେତେବେଳେ ତୁମ ପୁତ୍ର ମୋ ପୁତ୍ର ପରି ବଣରେ ବୁଲୁଥିବ।"

ମୁନୀଙ୍କର ଅଭିଶାପ ରାଜା ଦଶରଥଙ୍କ ପାଇଁ ଅବଶ୍ୟ ଆଶିର୍ବାଦ ଭଳି କାମ ଦେଇଥିଲା। ଅପୁତ୍ରିକ ରାଜାଙ୍କୁ ପୁତ୍ର ଶୋକ ଭୋଗିବାକୁ ପଡ଼ିବ। ସେହି ଅଭିଶାପ କାରଣରୁ ରାମଚନ୍ଦ୍ର ତାଙ୍କ କୋଳରେ ଜନ୍ମ ଗ୍ରହଣ କଲେ। ଅଭିଶାପଟା ଆଶିର୍ବାଦ ହେଉ ପଛେ, ଏହି ଘଟଣା ତ ଥିଲା, ରାଜା ଦଶରଥଙ୍କ ପାଇଁ ଏକ ବଡ଼ ଦୁଃଖଦ ଦୁର୍ଘଟଣା।

କମଳେଶଙ୍କୁ ଦେଖିଲେ, କେହି ବି ଜାଣି ପାରିବ ନାହିଁ; ସେ ଜଣେ ନପୁଂସକ। ମୋଟା ମୋଟା ନିଶ, ଚଉଡ଼ା ଛାତି। ଦେହରେ ହାତୀଏ ବଳ। ରସିକ ପଣିଆଁରେ ଆଗୁଆ। କେଉଁ ଜନ୍ମରେ ସେ କି ପାପ କରିଥିଲେ, କି ମୁଁ କେଉଁ ଜନ୍ମରେ କି ପାପ କରିଥିଲି କେଜାଣି, ଭଗବାନ ଆମପାଇଁ ଏ'ଦଣ୍ଡ ରଖିଥିଲେ। ତାଙ୍କର ସ୍ନେହ ଆଦର ଆଉ ପରକୁ ଆପଣା କରିବାର ଗୁଣ ହିଁ ମୋତେ ବଞ୍ଚିବାର ରାହା ଦେଖେଇଲା।

ମୁଁ ଅନୁଭବ କରୁଥିଲି. କମଳେଶ ତାଙ୍କ ନିଜ ପାଇଁ ନୁହେଁ, ମୋ ପାଇଁ ବେଶି ମନଦୁଃଖ କରୁଥିଲେ। ମୁଁ ତାଙ୍କୁ କେତେଥର ବୁଝେଇଛି। "ସନ୍ତାନ ଆମ ଭାଗ୍ୟରେ ନାହିଁ। ଅଯଥାରେ ତମେ ବ୍ୟସ୍ତ ହେଉଛ କାହିଁକି ? ଶହ ଶହ ଝିଅ-ପୁଅ ବାହା ନହେଇ ରହି ପାରୁଛନ୍ତି, ସେମାନଙ୍କର କ'ଣ ହେଇ ଯାଉଛି, କହିଲ ?"

କମଳେଶ ନୀରବ ରହି ଯାଆନ୍ତି। ମୋ ସୁଖ ପାଇଁ ସେ ସବୁବେଳେ ଉପାୟ ଖୋଜି ବୁଲନ୍ତି। ବିଭିନ୍ନ ପ୍ରକାର ପରୀକ୍ଷା ନିରୀକ୍ଷା, ଔଷଧ, ଚେରମୂଳ ଓ ଗୁଣି-ଗାରେଡ଼ିରେ ଅନେକ ଅର୍ଥ ଶ୍ରାଦ୍ଧ କରିଛନ୍ତି।

ଶେଷରେ ଦିନେ ସେ କେଉଁଠୁ ଠିକଣା ଯୋଗାଡ଼ କରି ମୋତେ ନେଇ ଜଣେ ତାନ୍ତ୍ରିକର ଶରଣାପନ୍ନ ହେଲେ। କେଉଁ ଏକ ଅଜଣା ଜାଗାରେ କମଳେଶ ମୋତେ ଛାଡ଼ି ଦେଇ ବାହାରକୁ ଚାଲିଗଲେ। ଯିବା ପୂର୍ବରୁ ମୋତେ ଅଭୟବାଣୀ ଦେଇଗଲେ, "ଏଠି ଯେଉଁମାନେ ଅଛନ୍ତି - ସେମାନେ ସମସ୍ତେ ସିଦ୍ଧ ପୁରୁଷ। କୌଣସି ପ୍ରକାର ଭୟ ନାହିଁ। ତୁମ ଗର୍ଭରୁ ମୋର ସନ୍ତାନଟିଏ ଦରକାର। ଏଥିପାଇଁ ତୁମକୁ ଯାହା କିଛି କଷ୍ଟ ଯନ୍ତ୍ରଣା ଭୋଗିବାକୁ ପଡ଼ିବ, ମୋ ପାଇଁ ସହିଯିବ।"

କମଳେଶଙ୍କ କଥାଗୁଡ଼ାକ ମୋତେ ସେଦିନ କେମିତି କେମିତି ଲାଗିଥିଲା। ମୁଁ ଭୟରେ ଥରି ଯାଇଥିଲି। ଜଣେ ମାତାଜୀ ମୋତେ ଧରି ନେଇଗଲେ, ତାନ୍ତ୍ରିକଙ୍କ ପୂଜାସ୍ଥଳକୁ। ସେଠାରେ ଝୁଣା ଆଉ ଧୂପ ଗନ୍ଧରେ ମୁଁ ଅଣ ନିଃଶ୍ୱାସୀ ହେଇ ପଡୁଥିଲି। ତା'ପରେ ମୋର ଚେତା ବୁଡ଼ିଗଲା।

ଚେତା ଫେରିଲା ବେଳକୁ ମୋ ଦେହଟା ଅପବିତ୍ର ହେଇ ସାରିଥିଲା। ଯାହାକି କମଳେଶ ପାଇଁ ଆଉ ଯୋଗ୍ୟ ନଥିଲା।

ମାତାଜୀ ମୋତେ ନେଇ ଶୁଦ୍ଧ ସ୍ନାନ କରାଇଲେ। ନୂତନ ବସ୍ତ୍ର ପରିଧାନ କରାଇଲେ। ମୁଁ ମୂକ ପାଲଟି ଯାଇଥିଲି। ମୋତେ ସେ ବୁଝେଇ ଦେଲେ - "ଠିକ୍ ଦଶ ମାସ ପରେ ତୁମ ଗର୍ଭରୁ ନିଶ୍ଚୟ ସନ୍ତାନଟିଏ ଜନ୍ମ ଲାଭ କରିବ। ବାବା ତୁମକୁ ଆଶିର୍ବାଦ ଦେଇଛନ୍ତି। ଯେଉଁ ସନ୍ତାନ ପାଇଁ ତୁମେ ଏତେ ବ୍ୟାକୁଳ ହେଉଥିଲ। ତାହା ଏବେ ତୁମ ଗର୍ଭାଶୟରେ ସୁରକ୍ଷିତ। ଯଦି କିଛି ଅସୁବିଧା ହୁଏ, ଆଉ ଥରେ ଆସି ବାବାଙ୍କ ଠାରୁ ଆଶିର୍ବାଦ ନେଇଯିବ। ଲାଜ ଭୟ ନଛାଡ଼ିଲେ, ସନ୍ତାନ ଲାଭ ସମ୍ଭବ ନୁହେଁ। ତୁମର ସ୍ୱାମୀ ବାହାରେ ଅପେକ୍ଷା କରିଛନ୍ତି। ଚାଲ ଅନ୍ୟମାନେ ପୁଣି ପୂଜା ଦେବାକୁ ଭିତରକୁ ଆସିବେ।"

ମାତାଜୀଙ୍କ ଶେଷ କଥା ପଦକ ଶୁଣି ମୋ ମୁଣ୍ଡ ଘୂରେଇ ଦେଲା। ତାନ୍ତ୍ରିକମାନଙ୍କ ଉପରେ ମୋର ଭୀଷଣ ଘୃଣା ଆସିଗଲା। ଭାବିଲି - ଏମାନଙ୍କୁ ଉପଯୁକ୍ତ ଶାସ୍ତି ଦେବା ପାଇଁ ସବୁ କଥା କମଳେଶଙ୍କୁ ହିଁ କହି ଦେବାକୁ ହେବ।

କମଳେଶଙ୍କ ପାଖକୁ ଯାଇ ତାଙ୍କ ମୁହଁକୁ ଚାହିଁଲି। ନିଶ୍ଚିତ ସନ୍ତାନ ପ୍ରାପ୍ତି ମୋହରେ ସେ ଉତ୍‌ଫୁଲ୍ଲିତ ଦିଶୁଥିଲେ। ମୋତେ ଦେଖି ପଚାରି ଦେଲେ, "ବାବାଙ୍କ ଆଶିର୍ବାଦ ମିଳିଛି ତ ? ଏଥର ମୁଁ ସନ୍ତାନଟିଏ ପାଇବି ତ ?"

ମୁଁ ଆଶ୍ଚର୍ଯ୍ୟ ହେଇଗଲି। ଅନୁଭବ କଲି, କମଳେଶଙ୍କ ମୁହଁରେ ଥିବା ଦୀର୍ଘ ଦିନର ଦୁଃଖର ଛାୟା ସତେ ଯେମିତି ଉଭେଇ ଯାଇଛି। ସନ୍ତାନଟିଏ ପାଇଁ ବ୍ୟାକୁଳ ହେଉଥିବା କମଳେଶ ଆଜି ଯେମିତି ନୂଆ ଜୀବନ ପାଇ ଯାଇଛନ୍ତି। ମୁଣ୍ଡ ତଳକୁ କରି ତାଙ୍କ ସହିତ ଘରକୁ ଫେରିଲି।

ସେ ଦିନର ଦୁର୍ଘଟଣାକୁ ମୁଁ ଆଉ ତାଙ୍କ ଆଗରେ ପ୍ରକାଶ କରି ପାରିଲି ନାହିଁ। ଯେତେ ଥର ମୁଁ ସେ କଥା ପ୍ରକାଶ କରିବାକୁ ସ୍ଥିର କରିଛି, ସେତେବେଳେ କିଏ ଯେମିତି ମୋର କଣ୍ଠରୋଧ କରି ପକାଇଛି।

ନରେଶର ଜନ୍ମ ପୂର୍ବରୁ କମଳେଶ ମୋର ଯତ୍ନ ନେବାରେ କୌଣସି ପ୍ରକାର ଅବହେଳା କରି ନଥିଲେ। ତା'ର ଏକୋଇଶିଆ ଉତ୍ସବକୁ ସେ ଖୁବ୍ ଯାକଜମକରେ ପାଳନ କରିଥିଲେ। ମୁଁ ତାଙ୍କର ଆନନ୍ଦ ଆଉ ସୁଖକୁ ଦେଖି ଭାବୁଥିଲି, କମଳେଶ କେଡ଼େ ନିରୀହ ମଣିଷଟିଏ ସତେ ! କୁଆ ବସାରେ କୋଇଲି ଛୁଆ ଯେ ବଢୁଛି, ସେ କଥା ସେ ଜାଣନ୍ତି ନାହିଁ ।

ଚାହୁଁ ଚାହୁଁ ଅଠର ବର୍ଷ ବିତିଗଲା। ଯେତେଥର ଚେଷ୍ଟା କରିଛି, ମୁଁ ମୋର ପାପ କଥାକୁ ସ୍ୱୀକାର କରିଦେଇ ଆଶ୍ୱସ୍ତ ହେବି। କିନ୍ତୁ ସେ ସୁଯୋଗ ମୁଁ ପାଇନାହିଁ। ଆଜି କିନ୍ତୁ ନିଶ୍ଚୟ କହିଦେବି। ସବୁକଥା ଖୋଲି କମଳେଶ ଆଗରେ ଥୋଇଦେବି। ସେ ଯାହା କରିବାର କରନ୍ତୁ।"

ମୁଣ୍ଡ ଉଠେଇ କମଳେଶଙ୍କୁ ଚାହିଁଲେ ସନ୍ଧ୍ୟା । ପୁଣି ଥରେ ତାଗିଦ କରି କହିଲେ - "ତୁମେ ଆଜି ଏତେ ଗପୁଛ କାହିଁକି ? ନରେଶ କ'ଣ ଆଜି ପଳେଇ ଯାଉଛି, ନା କ'ଣ ? ମୋର ଗୋଟିଏ ଜରୁରୀ କଥା ତମ ପାଖରେ ପ୍ରକାଶ କରିବାର ଅଛି। ଏକାନ୍ତ ବ୍ୟକ୍ତିଗତ। ନରେଶ ପଢ଼ାକୁ ଗଲେ, ମୁଁ ତମକୁ କହିବି।"

ନରେଶ ମାଆଙ୍କ କଥା ଜାଣେ। ସେ ନିଶ୍ଚୟ ବାପାଙ୍କୁ ଜଣେଇ ଦେବେ - 'ତମ ମସ୍ତିଷ୍କରେ କ୍ୟାନ୍‌ସର ହେଇଛି । ଏଇଟା ଲାଷ୍ଟଷ୍ଟେଜ। ଆଉ ମାତ୍ର କେଇଟା ଦିନ ପରେ ତମର ଜୀବନ ଦୀପଟା ଧପ୍ କରି ଲିଭିଯିବ। ଆମେ ଦୁଇ ଜଣ ତୁମ ବିନା ବଞ୍ଚିବୁ କେମିତି ?'

ନରେଶ ବାପାଙ୍କ ପାଖରୁ ଉଠି ଠିଆ ହେଲା। ମାଆଙ୍କ କାନରେ ଫିସ୍ ଫିସ୍ ହେଇ ସଚେତନ କରେଇ ଦେଇଗଲା, "ବାପାଙ୍କ ରୋଗ କଥା କଦାପି ତାଙ୍କୁ କହିବୁ ନାହିଁ।"

ସନ୍ଧ୍ୟା ମୁଣ୍ଡ ଟେକି ଚାହିଁଲେ, ନରେଶ ମୁଣ୍ଡ ତଳକୁ କରି ଚାଲି ଯାଉଛି, ଦୂରକୁ ଦୂରକୁ। ଏହାକୁ ଉପଯୁକ୍ତ ସମୟ ମନେ କରି ସନ୍ଧ୍ୟା କହିଲେ - "ଆଜି ତମକୁ ଯେଉଁ କଥା ପଦେ କହିବାକୁ ଯାଉଛି, ସେଥିପାଇଁ ମୁଁ ନିଜକୁ କ୍ଷମା ଦେଇପାରୁ ନାହିଁ। ତୁମ ସହିତ ମୁଁ ଯେଉଁ ବିଶ୍ୱାସଘାତକତା କରିଛି, ସେଥିପାଇଁ ମୁଁ କ୍ଷମା ପାଇଁ ମଧ୍ୟ ଯୋଗ୍ୟା ନୁହେଁ। ଆଜି ମୋ ଜୀବନର ଏକ କଠୋର ସତ୍ୟ ପ୍ରକାଶ କରିବାକୁ ସାହସ ସଂଚୟ କରିଛି। ମୋ କଥା ଶୁଣିବାକୁ ତୁମର ଧୈର୍ଯ୍ୟ ଅଛି ତ ?"

କମଳେଶ କହିଲେ - "ତମେ ସାଧାରଣ କଥାରେ ଏତେ ଗୌର ଚନ୍ଦ୍ରିକା ଦେଉଛ କାହିଁକି ? ଏ' କେବିନ୍‌ରେ ତମ ଆଉ ମୋ ଛଡ଼ା କେହି ନାହାନ୍ତି, ଯାହା କହିବାର ସବୁ କଥା କୁହ। କିନ୍ତୁ ତମେ ଯାହା କହିବାକୁ ଚାହୁଁଛ, ସେ କଥା ମୁଁ ଜାଣେ। ମୋ ମସ୍ତିଷ୍କର କ୍ୟାନ୍‌ସର କଥା, ନା' - ନରେଶର ଜନ୍ମ କଥା କହିବ ?

- ଏଇଟା ମୋର ଲାଷ୍ଟ ଷ୍ଟେଜ୍। ଆଉ ମାତ୍ର କେଇଟା ଦିନ ମୋ ପାଇଁ ବାକି ଅଛି। ନରେଶ ମୋ ଔରସରୁ ଜନ୍ମ ନୁହେଁ। ଆଉ ତମେ କହିବ, ଭଣ୍ଡ ତାନ୍ତ୍ରିକଠାରୁ ତମେ ପ୍ରତାରିତ ହେଇ ନରେଶକୁ ଜନ୍ମ ଦେଇଛ। ଏହି କଥା କହିବ ତ ?

- ତମେ ତାକୁ ଜନ୍ମ ଦେଇଛ । ସେ ତମର ପୁଅ। ତମର ସବୁ ଜିନିଷ ତ ମୋର। ନରେଶ କ'ଣ ଆଉ କାହାର ହେଇପାରେ ?

ସନ୍ଧ୍ୟା ! ତମର ଯାହା, ସେ ତ ମୋର। ମୁଁ ସନ୍ତାନ ଉତ୍ପାଦନ ପାଇଁ ଅକ୍ଷମ, ସେ କଥା ଜାଣେ। ତଥାପି ତମେ ମୋତେ ସନ୍ତାନର ଜନକ କରେଇ, ମୋ ମନରୁ କଳଙ୍କ ପୋଛି ଦେଇ ପାରିଛ। ମୁଁ ତ ଏତିକି ବୁଝି ନେଇଛି । ଶେଷରେ ତମ ନିକଟରେ ମୁଁ ଋଣୀ ହେଇ ଆର ପାରିକୁ ଚାଲିଯିବି। ପର ଜନ୍ମରେ ତୁମକୁ ପାଇବାକୁ ପୁଣି ଅପେକ୍ଷା କରିବି।"

ହଠାତ କମଳେଶଙ୍କ ଦେହ ଥରିବାକୁ ଲାଗିଲା।। ମୁଣ୍ଡଟାକୁ ଜାବୁଡ଼ି ଧରି ସେ ବିଛଣାରେ କଚାଡ଼ି ହେଇ ପଡ଼ିଲେ। ସନ୍ଧ୍ୟା ଚିତ୍କାର କରି ଉଠିଲେ।

ଡାକ୍ତରଙ୍କ ଚାମ୍ବରରୁ ନର୍ସ ଦୌଡ଼ି ଆସିଲେ। ସଂଗେ ସଂଗେ ତାଙ୍କୁ ଇମ୍‌ରଜେନ୍ସି ରୁମ୍‌କୁ ନିଆଗଲା। କିଛି ସମୟ ପରେ ଡାକ୍ତରବାବୁ ଆସି ଖବର ଦେଲେ, "କମଳେଶବାବୁ ଇଜ୍ ନୋ ମୋର୍ । ସେ ଆଉ ନାହାନ୍ତି।"

000



# ଭୋକ

ଜୟପୁର ସହରଠାରୁ ଏଗାର କି.ମି. ଦୂରରେ ଯେଉଁ ନୂଆ ସହରଟି ଗଢ଼ି ଉଠିଛି, ସେଇଟା କୋଲାବ ନଗର। କେଇଟା ବର୍ଷ ଆଗରୁ ଏଇଠି ବାଘ ରହୁଥିଲେ କି ନାହିଁ, କିନ୍ତୁ ଭାଲୁ ଥିଲେ ମାଳମାଳ । ଏବେ ବି ସେ ଗୁଡ଼ାକ ପାହାଡ଼ ତଳକୁ ଓହ୍ଲେଇ ଆସନ୍ତି, ହୁଙ୍କା ଉଈ, ମହୁଲ ଫୁଲ ଆଉ ଟୋଲ ଖାଇବାକୁ । ପାଚିଲା କେନ୍ଦୁଫଳ ଖାଉ ଖାଉ କଲୋନୀ ଭିତରକୁ ବି ପଶି ଆସନ୍ତି। ଏବେ ସିନା ଜଳଭଣ୍ଡାର ଆଉ କଂକ୍ରିଟ ଡ୍ୟାମ୍ ତିଆରି ହେଲା। ନ ହେଲେ କୋଲାବ ନଦୀର ଯୋଉ ଭୟଙ୍କର ରୂପ ଥିଲା - ବାପରେ ବାପ !

ପ୍ରୋଜେକ୍ଟ କାମ ଆରମ୍ଭ ହେଲା ବେଳକୁ ଅଳ୍ପ କେଇଟା କ୍ୟାମ୍ପ ବସିଥିଲା। ମାପଚୁପ, ବଣ ସଫା କାମ ତ କେତେଦିନ ଚାଲିଥିଲା। ହଠାତ କେତେ ଗୁଡ଼ାଏ ବଡ଼ ବଡ଼ ମେସିନ ଆସିଗଲା। ଧୂମଧାମ କାମ ଚାଲିଲା। ଏଣେ ଠିକାଦାରଙ୍କର ଭିଡ଼ ବି ଜମିଗଲା। ପାହାଡ଼ର ତଳ ଉପର, ଝରଣା ପାଖ, ଭାଲୁବଣ ସବୁଠି ଖୋଳା ତଡ଼ା ଚାଲିଲା। କେଇଟା ଦିନ ଭିତରେ ଧାଡ଼ି ଧାଡ଼ି ଘର, ବଡ଼ ବଡ଼ ଅଫିସ ଓ ତାରବାଡ଼ ଦିଆ ଲମ୍ବା ଲମ୍ବା ଗ୍ୟାରେଜ୍ ସବୁ ଠିଆ ହୋଇ ପଡ଼ିଲା।

ପାହାଡ଼ ଉପରେ ଚିଫ୍ ଇଂଜିନିୟରଙ୍କ ବଙ୍ଗଳା ତ ବହୁତ ଡେରିରେ ହେଇଛି। ପ୍ରଥମେ ତ୍ରିପାଠୀବାବୁ ଚିଫ୍ ଇଂଜିନିୟର ହେଇ ଯେତେବେଳେ ବଙ୍ଗଳାକୁ ଆସିଲେ, ସୀତାକାନ୍ତକୁ ଅର୍ଡର୍ଲି କରି ଘର କାମରେ ଲଗେଇଲେ । ଯା' ଭିତରେ କେତେ ଚିଫ୍ ଇଂଜିନିୟର ବଦଳି ହେଇ ଗଲେଣି, କିନ୍ତୁ ସେ ସେଇଠି ସେମିତି ଅଛି।

ସେତେବେଳେ କୋଲାବ ଶବ୍ଦ ସାଙ୍ଗରେ ନଗର ଲାଗି ନଥିଲା। କିମ୍ବା କୌଣସି ଅଫିସର କଲୋନୀକୁ ଆସି ନଥିଲେ। ଏବେ ତ ହଜାରେ ସଂଖ୍ୟାରେ ଇଂଜିନିୟର, କ୍ଲର୍କ ଆଉ ତା'ସାଙ୍ଗକୁ ଆହୁରି କେତେ ପ୍ରକାର କର୍ମଚାରୀ ଆସିଲେଣି। ସ୍କୁଲ, ଡାକ୍ତରଖାନା, ପୋଷ୍ଟ ଅଫିସ୍, ବଜାର ହାଟ ଖୋଲିଗଲା। ସେମାନେ ତ ପୁଣି ରହିବେ, ଏଣେ ତେଣେ ଛୋଟ ବଡ଼ ଘର ଗଢ଼ି ଉଠିଲା। ଛୋଟିଆ ନୂଆ ସହରଟିରେ ପ୍ରାୟ ସମସ୍ତେ ସମସ୍ତଙ୍କୁ ଅଳ୍ପେ ବହୁତେ ଚିହ୍ନନ୍ତି।

କୋଲାବ ନଗର ଜାଣିକି ଗୋଟାଏ ବଡ଼ ଗାଆଁ। ଗୋଟାଏ ବହୁ ସଂଖ୍ୟା ବିଶିଷ୍ଟ ବୃହତ ପରିବାର।

ବଜାର ଛକ ଉପରକୁ ଚାଲିଗଲେ, ସେଇଠି ଅନେକ ନୂଆ ନୂଆ ଖବର ଶୁଣିବାକୁ ମିଳେ। ଆଜି କୋଉଠି ଦୁର୍ଘଟଣା ଘଟିଛି, କିଏ ଡାକ୍ତରଖାନାରେ ମରିଗଲାଣି। ଆଜି ପୋଷ୍ଟ ଅଫିସରେ ପୋଷ୍ଟକାର୍ଡ ସରିଯାଇଛି। ପଣଷ ଗଛ ମୂଳେ ଆଜି ଖାସି ମରା ହଉଛି। କାହା ପୁଅ ଆଜି ସ୍କୁଲରେ କପି କରି ଧରା ପଡ଼ିଛି। ଏମିତି କୋଉ ଝିଅ ସାଙ୍ଗରେ କାହାର ସଂପର୍କ ଅଛି। ସମଗ୍ର ସହରର ଛୋଟ ବଡ଼ ଖବର ଆପେ ଆପେ ଆସିଯାଏ। ଖାଲି ଧୈର୍ଯ୍ୟ ଧରି ଅପେକ୍ଷା କରିବା ଦରକାର। ମିଟୁ ଚାହା ଦୋକାନ ହେଉ କି ଚନ୍ଦାର ସେଲୁନ ହେଉ, ସେ ସବୁ ଜାଗାରେ ସବୁଠୁ ବେଶି ଲୋକଙ୍କର ଭିଡ଼ ଜମେ, ଆଜିର ତାଜା ଆଉ ମଜା ଖବର ଜାଣିବାକୁ।

ଆଜିକାଲି ଖବର କାଗଜ ଗୁଡ଼ାକରେ ଯେଉଁ ପରିମାଣରେ ବିଜ୍ଞାପନ ତା'ସାଙ୍ଗକୁ ଖବରକାଗଜ ବାଲାଙ୍କର ଆତ୍ମ ପ୍ରଚାର, ପୁଣି ଯାବତୀୟ ମିଛ ରାଜନୀତି କଥା। ଚାରିଆଡ଼କୁ ଚାହିଁ ଦେଲେ, ପାଞ୍ଚ ମିନିଟରେ ସରିଯାଏ। ଅସଲ ଆନନ୍ଦଦାୟକ ଖବର ଯାହା ଏ'ଜାଗାରୁ ମିଳେ, ତାହା ତ କେବେ ଶେଷ ହୁଏ ନାହିଁ। ନୂଆ ଖବର ସହିତ ନିଜର କିଛି ମନ୍ତବ୍ୟ ଦେବାର ଏଠି ସୁଯୋଗ ବି ଅଛି। ଖବରକୁ ରସାଳ କରିବା ପାଇଁ ନୂଆ ଏପିସୋଡ୍ ମଧ୍ୟ ଯୋଗ କରିବାର ଅଧିକାର ଅଛି।

- 'ମୁଁ ପରା ନିଜ ଆଖିରେ ଦେଖିଛି।'
- 'ମୋ ବାପା ସେ ଜାଗାରେ ଥିଲା।'
- 'ଆମ ଅଫିସ କଥା ମୁଁ ଜାଣିନାହିଁ ?'
- 'ତାଙ୍କ କଥା କୁହ ନାହିଁ।'
- 'ଛି - ଛି - ।'
- 'ଲୋକଟା ନାଁ ଧରନା।'
- ଗତଥର ପରା ସେଇୟା, ହେଇଥିଲା।'
- 'ଯାଉନୁ ନିଜେ ଦେଖି ଆସିବୁ।'
- 'ମୁଁ ପଚାରିବାରୁ ପରା ଚୁପ୍ ରହିଗଲା।'
- 'ଛାଡ଼ ଛାଡ଼ ସେକଥା, ଏ'କୋଉ ନୂଆ କଥା ମ!'
- 'ଆରେ ! କିଏ ଏମିତି ପାପ ନ କରୁଛି ଯେ ?'
- 'ଆଜିକାଲିର ପିଲାଙ୍କୁ ବିଶ୍ୱାସ ନାହିଁ।'
- 'ହବ ନାଇଁ କେମିତି ?'
- 'ସେ ଯେଉଁ କାମ କରିଛି, ତା'ର ଫଳ ପାଇବ ନାହିଁ ?'
- 'ଇଏ ହେଲା କଳି ଯୁଗର ସତ୍ୟ।'
- 'ବାଃ! ବାଃ!, ଠିକ୍ ହେଇଛି।'
- 'କଥାଟା ମନକୁ ପାଇଲା।'

ଏଇମିତି ଗୋଟାଏ ଗୋଟାଏ ଧାଡ଼ି କଥା ମଝିରେ କହିଦେଲେ, ନୂଆ ନୂଆ ଖବର ଗୁଡ଼ାକ ଜୀବନ୍ତ ହେଇଯାଏ। ମନଗଢ଼ା କଥାଗୁଡ଼ା ବି ଦୌଡ଼ନ୍ତି।

ଆଉ କେତେ ପବନରେ ଉଡ଼ି ଉଡ଼ି ଯାଇ ଅଖାଡୁଆ ଜାଗାରେ ବି ପହଞ୍ଚ ଯାଆନ୍ତି। ଦିନେ ଦିନେ ଭାରି ଗଣ୍ଡଗୋଳ, ମାଡ଼ପିଟ ବି ହେଇଯାଏ, ଏଇମିତିକା ମନଗଢ଼ା ମଜା ଖବରକୁ ନେଇ। ଦଳେ ତାକୁ ବିଶ୍ୱାସ କଲା ବେଳେ ଆଉ ଦଳେ ସୁଦ୍ଧ ମିଛ କହି ଖବରଟାକୁ ପାଣିଚିଆ କରି ପକାନ୍ତି।

ସେଦିନ ଖବରଟା ଥିଲା - ଯେମିତି ତାଜା, ସେମିତି ରସାଳ । ବଡ଼ ଘରର ବଢ଼ିଲା ଝିଅ, ତାକୁ ପୁଣି ନେଇକି ପଳେଇଛି, ତାଙ୍କ ଘର ଚାକର। କାହା କାନରେ ଏମିତି ହାଡ଼ ଅଛି ଯେ, ସେ ଖବରଟାକୁ ଅଧାଶୁଣି ଚାଲିଯାଇ ପାରିବ ? ନିଦାକାଲ ଲୋକ ବି ମେସିନ୍ ଲଗାଇ ଫିସ୍ ଫିସ୍ କରି ପଚାରିବ, କାହା ଝିଅ କିହୋ ?

ଏହି ଖବରଟା ମୁହୂର୍ତ୍ତକ ମଧ୍ୟରେ କୋଲାବ ନଗର ସହରକୁ ସଂପୂର୍ଣ୍ଣ ଭାବେ ସଂକ୍ରମଣ କରି ରଖିଦେଲା।

ବାରିକ ଦୋକାନରୁ ଅଫିସକୁ। ଅଫିସରୁ ଘରକୁ। ଘରୁ ସ୍କୁଲକୁ। ଡାକ୍ତରଖାନାରୁ ପୋଷ୍ଟ ଅଫିସକୁ। ଏ' ତୁଣ୍ଡରୁ ସେ ତୁଣ୍ଡକୁ ଖବରଟା ଖାଲି ଡେଉଁଥାଏ।

ଚିଫ୍ ଇଂଜିନିୟର ସାହେବଙ୍କର ଏକମାତ୍ର କନ୍ୟା ଦୁଇ ଦିନ ତଳେ ଘରଛାଡ଼ି ଚାଲି ଯାଇଛି। ଘରର ସବୁଠୁ ବିଶ୍ୱସ୍ତ ଚାକର ଟୋକା ମଧ୍ୟ ଦି'ଦିନ ହେଲା ଦେଖା ନାହିଁ।

ଚିଫ୍ ଇଂଜିନିୟରଙ୍କ ସ୍ତ୍ରୀ ପୋଲିସ ଷ୍ଟେସନରେ ଏଫ.ଆଇ.ଆର. ଦେଇଥିବାରୁ, ଏ'କଥାଟା ପ୍ରଘଟ ହେଇଗଲା। ନହେଲେ ସେ ଘରେ ଏମିତି କେଡ଼େ କେଡ଼େ ଘଟଣା, ଦୁର୍ଘଟଣା ଘଟେ, ତା'ର ଟେର ତ କେହି କେବେ ପାଇ ପାରନ୍ତି ନାହିଁ।

ଝିଅଟାକୁ ଯିଏ ଆଖିରେ ଦେଖିଛି, ସିଏ ହିଁ ଜାଣିଛି, ତା'ର ରୂପ ଓ ଗୁଣ କଥା। ବଡ଼ ଘର ଝିଅ, ଭଲ ଜିନିଷ ଖାଇଲେ। ବଢ଼ିଆ ପୋଷାକ ପିନ୍ଧିଲେ। ଏୟାର କଣ୍ଡିସନ୍ ରୁମ୍‌ରେ ରହିଲେ। ସୁନ୍ଦରୀ ହେବେ ନାହିଁ ତ ଆଉ କ'ଣ ହେବେ ?

ସେଇମିତି ବଡ଼ ଘର ଝିଅମାନେ ଭଲ ସ୍କୁଲରେ ପଢ଼ିଲେ। ଭଲ ଟ୍ୟୁସନ ମାଷ୍ଟରମାନେ ତାଙ୍କ ଘରକୁ ଆସି ପାଠ ପଢ଼େଇଲେ। ଯାବତୀୟ ରେଫରେନ୍ସ ବହି ଆଣି ଦେଖିଲେ। ବାପା ମା'ଙ୍କ ସାଙ୍ଗରେ ବିଭିନ୍ନ ଜାଗା ବୁଲିବାର ସୁଯୋଗ ପାଇଲେ। ତାଙ୍କର ପାଠ ନହେଲେ ଆଉ କାହାର ହେବ ?

ପାଞ୍ଚ ବର୍ଷ ତଳେ ଅନୁଷ୍କା ପଣ୍ଡା ଫାଷ୍ଟ ଡିଭିଜନରେ ଏମ.ଏସ.ସି. ପାସ୍ କରିଥିଲା। ସେତେବେଳକୁ ତାଙ୍କ ବାପା ରେଙ୍ଗାଲି ପ୍ରୋଜେକ୍ଟରେ ସୁପରିଟେଣ୍ଡିଂ ଇଂଜିନିୟର ଥିଲେ। ଏହା ଭିତରେ ତାଙ୍କ ପାଇଁ ଅନେକ ପ୍ରସ୍ତାବ ଆସିଥିଲା। ପଣ୍ଡା ବାବୁଙ୍କ ପତ୍ନୀ ସବୁ ପ୍ରସ୍ତାବକୁ ନାକଚ କରି ଦେଇଥିଲେ।

ତାଙ୍କର ଇଚ୍ଛା, 'ମୋର ଏକମାତ୍ର ଝିଅକୁ ଆଇ.ଏ.ଏସ୍. କିମ୍ବା ଆଇ.ପି.ଏସ୍. ବ୍ୟତୀତ ଆଉ କେଉଁଠି ଦେବି ନାହିଁ। ରୂପରେ, ଗୁଣରେ ଆଉ ଶିକ୍ଷାରେ ସିଏ ତ କେବଳ କ୍ଲାସ୍ ୱାନ୍ ଅଫିସର ପାଇଁ ଫିଟ୍ ହେଇ ପାରିବ।'

ପଣ୍ଡାବାବୁ ଚିଫ୍ ଇଂଜିନିୟର ହେଇ ଏଠିକି ଆସିବା ବେଳକୁ ତାଙ୍କ

ପତ୍ନୀଙ୍କର ମୁଣ୍ଡ ଆଉ ଟିକେ ଉଚ୍ଚା ହେଇଗଲା। କିନ୍ତୁ ଝିଅର ବୟସ ବି ତା'ସଂଗେ ସଂଗେ ବଢ଼ିଗଲା। ପଣ୍ଡାବାବୁ ବାଧ୍ୟ ହେଇ କୌଣସି କଲେଜର ଲେକ୍‌ଚରର ବା କୌଣସି ଆସିଷ୍ଟାଣ୍ଟ ଇଂଜିନିୟର ବର ପାଇଁ ରାଜି ହେଇଯିବେ ବୋଲି ପତ୍ନୀଙ୍କୁ ଜଣେଇ ଦେଲେ। ବୟସ ଦୃଷ୍ଟିରୁ ଭଲ ପ୍ରସ୍ତାବ ମୋଟେ ଆସିଲା ନାହିଁ।

ଅନୁଷ୍କା ପଣ୍ଡା ୟୁନିଭରସିଟିରେ ପଢୁଥିବା ବେଳେ ତା'ର ଜଣେ ବୟ ଫ୍ରେଣ୍ଡକୁ ବାହା ହେବାକୁ ସ୍ଥିର କରିଥିଲା । ସ୍ୱାମୀ-ସ୍ତ୍ରୀ ପରି ସେମାନେ ଖୁବ୍ ବୁଲାବୁଲି କରୁଥିଲେ। କିନ୍ତୁ ସେ ପିଲାଟା ଥିଲା, ବାପା ମାଆଙ୍କର ଅତ୍ୟନ୍ତ ବିଶ୍ୱସ୍ତ। କଲେଜ ଲେକ୍‌ଚରର ଚାକିରି ପାଇବା ପରେ ଆଉ ତା'ସହିତ ବିବାହ ସମ୍ଭବ ହେଲା ନାହିଁ। ସେ ନିଜ ଜାତିର କୋଉଠି ଗୋଟାଏ ଗାଉଁଲି ଝିଅକୁ ବାହା ହେଇ ପଡ଼ିଲା। ତା'ବାହାଘରକୁ ଅନୁଷ୍କା ବି ଯାଇଥିଲା। ସେଇଠି ବହୁତ କାନ୍ଦିଲା। ପିଲାଟା ତାକୁ ପ୍ରତିଶ୍ରୁତି ଦେଇଥିଲା, 'ଆମର ବାହାଘର ହେଇଗଲେ, ବି ମୁଁ ତୁମ ସଂଗେ ପୂର୍ବପରି ସଂପର୍କ ରଖିବି ନିଶ୍ଚୟ।'

ସତକୁ ସତ ସେ ଅନୁଷ୍କା ସହିତ ସଂପର୍କ ରଖି କୋଲାବ ନଗରକୁ ଅନେକ ଥର ଆସିଛି। ଅନୁଷ୍କା ତାକୁ ଗାଡ଼ିରେ ନେଇ ଡ୍ୟାମ୍ ପାଖକୁ ଯାଏ। ମନଇଚ୍ଛା ଦୁହେଁ ଗପନ୍ତି।

ସୀତାକାନ୍ତ ଲୁଚି ଲୁଚି ସବୁ ଦେଖେ।

ଅନୁଷ୍କାର ମାଆ ଏତେ କଥା ବୁଝେନା। କାରଣ ଝିଅ ତ ଆଉ ଛୋଟ ହେଇ ରହିନାହିଁ। ଉଚ୍ଚ ଶିକ୍ଷିତା। ସିଏ ତା' ମାଆଙ୍କ ଠାରୁ ଅଧିକ ବୁଝେ, ଅଧିକ ଜାଣେ। ତେଣୁ ସେ ତା'କାମରେ ପ୍ରତିବନ୍ଧକ ସୃଷ୍ଟି କରନ୍ତି ନାହିଁ।

ଏଣେ ଝିଅଟାକୁ ତିରିଶ ପୂରି ଗଲାଣି। ସେ ନିଜେ ମୁହଁ ଖୋଲି ଥରେ ଦି'ଥର କହିଲାଣି, 'ବୋଉ ! ବାପାଙ୍କୁ କହିଦିଅ - ଏତେ ଜିଦ୍ କରି ଖାଲି ଅଫିସର ଖୋଜିଲେ, ମୁଁ ବୁଢ଼ୀ ହେଇଯିବି।'

କିନ୍ତୁ ମାଆର ମନ କ'ଣ ଝିଅର ଭଲ ଚାହେଁ ନାହିଁ ? ସେ କ'ଣ ଜାଣିପାରୁ ନାହାନ୍ତି, ଝିଅର ଆଚରଣ, ଚାଲିଚଲାଣ ସବୁ ବଦଳି ଗଲାଣି । ଥରେ ଦି'ଥର ଝିଅକୁ ଥରାବାତ ମାରିଲାଣି । ଡାକ୍ତରବାବୁ ବି ପରାମର୍ଶ ଦେଇଛନ୍ତି, ଶୀଘ୍ର ଅନୁଷ୍କାକୁ ବାହା କରିଦିଅ । ସବୁ ଠିକ୍ ହେଇଯିବ । କିନ୍ତୁ ବର ମିଳୁଛି କୋଉଠି ?

ଏଇ କେତେ ଦିନ ତଳେ ସେ ଲକ୍ଷ୍ୟ କରୁଥିଲେ, ଅନୁଷ୍କା ଏକୁଟିଆ ଘରେ ରହିବାକୁ ପସନ୍ଦ କରୁଛି । ମଝିରେ ମଝିରେ ସେ କହୁଛି, "ମାଆ ! ତମେ ବଜାର ଆଡ଼େ ବୁଲି ଆସିବ ଯାଉନା।

- ମୁଁ ଘରେ ଅଛି, ସୀତାକାନ୍ତ ମୋର ଅସୁବିଧା ସୁବିଧା ସବୁ ବୁଝି ଦେବ ।

- ଯାଉନା ସାଇ ପଡ଼ିଶାରେ ଟିକେ ବୁଲି ଆସିବ।"

ସୀତାକାନ୍ତ ବି ଟିକେ ଟେଙ୍ଗା ହେଇ ଗଲାଣି। ସବୁବେଳେ ସେଇ ଅନୁଷ୍କା ପାଖେ ପାଖେ ରହିବାକୁ ପସନ୍ଦ କରୁଛି। ଯେତେ ହେଲେ ବି ମେଟ୍ରିକ୍ ଫେଲ ଚାକର ପିଲାଟାକୁ ନେଇ ନିଜର ଉଚ୍ଚଶିକ୍ଷିତା ରୂପବତୀ କନ୍ୟାକୁ ସନ୍ଦେହ କରିବାଟା ଠିକ୍ ନୁହେଁ।

- "ଟୋକାଟା ବୁଡ଼ି ବୁଡ଼ି ପାଣି ପିଉଥିଲା।

- ନିଜ ଝିଅଟା ମୋ ସାଙ୍ଗରେ ବିଶ୍ୱାସ ଘାତକତା କରିଛି, ପର ପୁଅଟାକୁ ଦୋଷ ଦେଇ ଲାଭ କ'ଣ ?"

ଅନୁଷ୍କାର ମାଆ ଏକଥା ଭାବି ଲାଜରେ ମୁହଁ ଟେକି ପାରୁ ନାହାଁନ୍ତି। କାନ୍ଦି କାନ୍ଦି ଆଖି ଦି'ଟା ପୋଟଳ ଭଳି ଫୁଲି ଗଲାଣି।

ଏଣେ ପଣ୍ଡାବାବୁ ଟୁର୍‌ରେ ଯାଇଛନ୍ତି ଜାପାନ। ତାଙ୍କୁ କ'ଣ କହି ବୁଝେଇବେ ? ଦି'ଦିନ ବିତି ଗଲାଣି, ଅନୁଷ୍କାର କୌଣସି ଖୋଜ ଖବର ନାହିଁ। ବିଛଣାରେ ଆଉ କେତେ ପଡ଼ି ରହିବେ। ଦାଣ୍ଡ ଦୁଆରେ ଯାଇ ଲଥ୍ କରି ତଳେ ବସି ପଡ଼ିଲେ । ଚାକରାଣୀ ବୁଢ଼ୀଟା ଘର ଓଳେଇ ସାରିଲାଣି। ସିଏ ବି ଭାରି ଗମ୍ଭୀର ଦିଶୁଛି। ତାକୁ ବି ଅନୁଷ୍କାର କାମଟା ପସନ୍ଦ ହେଇନାହିଁ। ସେ ଅନୁଭବ କରି ପାରୁଛନ୍ତି।

ବାରଣ୍ଡାରେ ଆଲ୍‌ସିସିଆନ୍ କୁକୁର ଜିମି ଜିଭ କାଢ଼ି ଧକଉଛି। ତା'ଉପରେ ଅନୁଷ୍କା ମାଆର ଦୃଷ୍ଟି ପଡ଼ିଗଲା। ମନକୁ ମନ ସେ କହି ଚାଲିଲେ - "ଏ କୁକୁର ଖଣ୍ଡକ କ'ଣ କମ୍ ବଦମାସ ! ଗତ ବର୍ଷ ଏ'କୁକୁରଟା ଠିକ୍ ଅନୁଷ୍କା ଭଳି କାମଟା କରି ପକେଇଥିଲା। ସେଇଥି ପାଇଁ ପଣ୍ଡାବାବୁ କହିଲେ, "ଜିମିକୁ ଗୁଳି କରି ମାରିଦେବି। ବଦମାସ କୁକୁର ଅପରଛନିଆ ଦେଶୀ କୁକୁର ସାଙ୍ଗରେ ଭାବ ଲଗେଇଛି। ଅଣ୍ଡିରା ଆଲ୍‌ସିସିଆନ୍ ପାଇଁ ମୁଁ ଡାକ୍ତରଙ୍କୁ ତେଣେ ହଜାରେ ଟଙ୍କା ଆଡଭାନ୍ସ ଦେଇ ଆସିଛି। ଏଣେ ସିଏ ଯାଇ ବୁଲା କୁକୁରକୁ ଗୋଟଉଛି।"

ପଣ୍ଡାବାବୁ ତ ନାରୀ ନୁହଁନ୍ତି, ସେ କେଉଁଠୁଁ ଜାଣିବେ, ଜିମି ଦେହର ଭୋକକୁ। ଡାକ୍ତର ହଜାରେ ନେଉ କି ଦଶ ହଜାର ନେଉ। ଭୋକ ବେଳେ ହିଁ ଖାଦ୍ୟ ଲୋଡ଼ା ହୁଏ। ଖାଦ୍ୟ ନ ମିଳିଲେ, ଭୋକରେ ଥିବା ଲୋକ ପେଜ ବି ପିଇଦିଏ। ଅଇଁଠା ପତ୍ର ଚାଟି ପେଟର ଭୋକକୁ ମେଣ୍ଟାଏ। ସେ ପଶୁ ହୋଇ କ'ଣ ଭୁଲଟା କରି ପକାଇଲା ଯେ ?"

ଚାକରାଣୀ ବୁଢ଼ୀଟା ବିଛଣା ଝାଡୁ ଝାଡୁ ଖଟ ତଳୁ ଚିଠି ଖଣ୍ଡେ ପାଇଲା। ଅନୁଷ୍କା ଲେଖିଛି -

ବୋଉ,

ମୋ ଭାଗ୍ୟକୁ ନେଇ ମୁଁ ଯାଉଛି। ସୀତାକାନ୍ତ ହିଁ ମୋର ଉପଯୁକ୍ତ ସ୍ୱାମୀ। ମୋ ଚିନ୍ତା କରିବୁ ନାହିଁ। ତତେ ସବୁ ଲଜ୍ୟାରୁ ମୁକ୍ତି ଦେବାକୁ ଘର ଛାଡ଼ି ମୁଁ ଚାଲି ଆସିଛି। ବାପା ତ ଏ'ବର୍ଷ ରିଟାୟର୍ଡ ହେବେ । ଗାଆଁକୁ ଫେରିଲେ, ମୁଁ ସେଇଠି ତୋତେ ଦେଖା କରିବି। ମୋ ପାଖରେ ଯଥେଷ୍ଟ ଟଙ୍କା ଅଛି। ନିଜ ଚେଷ୍ଟାରେ ଚାକିରି ଖଣ୍ଡିଏ ମଧ୍ୟ କରି ପାରିବି। ଏଥିପାଇଁ ସୀତାକାନ୍ତର କିଛି ଦୋଷ ନାହିଁ। ମୁଁ ତାକୁ କୋର୍ଟରେ ମ୍ୟାରେଜ୍ କରିନେବି।। ଇତି ।।

ତୋର ସ୍ନେହର
ଅନୁଷ୍କା

ଅନୁଷ୍କାର ଚିଠି ପଢ଼ି ମାଆର ମୁଣ୍ଡ ବୁଲେଇ ଦେଲା। ତରବର ହେଇ ସେ ପୋଲିସ ଷ୍ଟେସନକୁ ଫୋନ୍ କରି କହିଲେ - "ହ୍ୟାଲୋ, ମୋ ଝିଅ ଅନୁଷ୍କାର ଖବର ମିଳି ଯାଇଛି। ସେ ଏଫ.ଆଇ.ଆର୍.ଟିକୁ ଦୟା କରି ଚିରିଦେବେ।" ○○○



# ମ୍ଳାନ କାଳ ପାତ୍ର

ମୁଁ ଯେତେବେଳେ +୨ରେ ନାଆଁ ଲେଖେଇ କଲେଜ ଯିବା ଆରମ୍ଭ କଲି। ମାଆ ମୋତେ ସାବଧାନ କରି କହି ଦେଇଥିଲେ - "ତୁ ଏବେ ବଡ଼ ହେଇଗଲୁଣି। ତୁ ଜାଣିକି ତୋର ଗାର୍ଜିୟାନ୍। ତୋତେ ଜଗାରଖା କରିବାକୁ ସେଠି କେହି ନଥିବେ। ରାସ୍ତାରେ ଠିଆ ହେଇ ଗପିବୁ ନାହିଁ, କି କାହା ସାଙ୍ଗରେ କାହା ଘରକୁ ଯିବୁ ନାହିଁ। ନିଜ ରାସ୍ତାରେ ଯିବୁ। କଲେଜରେ କ୍ଲାସ୍ ନାହିଁ ତ କମନ୍ ରୁମ୍‌ରେ ବସିବୁ।"

- "ଟୋକା ପଲ ପଲ ହେଉଥିବେ। ସେମାନଙ୍କୁ ମୂଳରୁ କଥା ନକହିଲେ ଗଲା। ଅଧିକ ସ୍ମାର୍ଟ ଦେଖେଇ ହବୁ ନାହିଁ, କି ନିର୍ବୋଧ ଭଳି ୟା'କୁ ତାକୁ ଚାହିଁ ରହିବୁ ନାହିଁ। ଯଦି ତୋ ପାରିବା ଭିତରେ କୌଣସି ସମସ୍ୟା ଆଁସେ, ନିଜେ ସମାଧାନ କରିଦେବୁ। ନ ହେଲେ ପ୍ରିନ୍ସପାଲଙ୍କୁ ସିଧା ଯାଇ କହିବୁ। ଯଦି କିଛି ଫଳ ନ ହୁଏ ଶେଷରେ ମତେ ଆସି କହିବୁ, ମୁଁ ନିଜେ ତୋତେ ନେଇ କଲେଜ ଯିବି।"

କଲେଜକୁ ମୁଁ ବସ୍‌ରେ ଯାଏ, ବସ୍‌ରେ ଫେରେ । ସିନିୟର ପିଲାଙ୍କ ଢଙ୍ଗରଙ୍ଗ ଭାରି ଖରାପ ଲାଗେ। ଦଳଦଳ ହେଇ ଗପୁ ଥିବେ ଯେ ଗପୁଥିବେ। ତେଣେ କ୍ଲାସ୍‌ରେ ପିଲା ନଥିବେ। ଝିଅପିଲା ଠିଆ ହେଇଥିବା ବାରଣ୍ଡାରେ କେତେଟା ମିଛରେ ଏପଟ ସେପଟ ହେଉଥିବେ। ମଝିରେ ମଝିରେ ଆମକୁ ଦେଖି କମେଟ୍ ମାରୁଥିବେ। କଲେଜ ଗେଟ୍ ବାହାରେ ଗଛମୂଳେ ଗୋଟାଏ ଝିଅ ସାଙ୍ଗରେ ଗୋଟାଏ ପୁଅ ଘଣ୍ଟା ଘଣ୍ଟା ଧରି ଠିଆ ହେଇଥିବେ। କି'ଗପ ସେମାନେ କରନ୍ତି କେଜାଣି ? ତାଙ୍କୁ ଦେଖିଲେ, ଦେହରେ କଣ୍ଟା ଫୋଡ଼ି ହେଇଗଲା ପରି ଲାଗେ।

ଆମ ଝିଅ ପିଲାଙ୍କର ଢଙ୍ଗରଙ୍ଗ ତ ଆହୁରି ବେଶି ଖରାପ। ହାଇସ୍କୁଲ ପରୀକ୍ଷା ଦେବା ପର୍ଯ୍ୟନ୍ତ ଯେଉଁମାନେ ସଂଯତ ଆଉ ଶୃଙ୍ଖଳିତ ହେଇ ସ୍କୁଲର ୟୁନିଫର୍ମ ପିନ୍ଧି ଆସୁଥିଲେ, ହଠାତ୍ ସେମାନେ ପ୍ରଜାପତି ଭଳି ବିଭିନ୍ନ ପ୍ରକାର ରଂଗ ବେରଂଗ ପୋଷାକ ପିନ୍ଧି ଉଡ଼ିବା ଆରମ୍ଭ କରି ଦେଲେଣି। ପୁରୁଣା ଝିଅ କେଇଟା ଜିନ୍ ପ୍ୟାଣ୍ଟ ସାଙ୍ଗକୁ ଛୋଟ ଗଞ୍ଜି ପିନ୍ଧି ଯେମିତି ହେଇକି ଆସୁଛନ୍ତି,

ଲାଗୁଛି ; କୌଣସି ବିଦେଶୀ କ୍ଲବକୁ ଯିବା ପାଇଁ ସେମାନେ ସଜବାଜ ହେଉଛନ୍ତି।

ମୁଁ ଜାଣେ, ମୋ ବାପା-ମା, ଏ'ସବୁକୁ ପସନ୍ଦ କରନ୍ତି ନାହିଁ। କଲେଜକୁ ପାଠ ପଢ଼ିବାକୁ ଆସିଛ, ନା ଫେସନ୍ ସୋ'ଦେଖେଇବାକୁ। ମୋ ଭଳି ଆଉ କେତେଟା ଡରୁଆ ଝିଅ, ସେଇମିତି ହାଇସ୍କୁଲ ପିଲାଙ୍କ ଭଳି ଡ୍ରେସ୍ ପିନ୍ଧି କଲେଜ ଆସନ୍ତି।

ମନରୁ ଭୟ ଯେତେ ଦୂରେଇ ଦୂରେଇ ଯାଉଥିଲା, କଲେଜ ପିଲାଙ୍କର ବିଶୃଙ୍ଖଳା ମନୋବୃତ୍ତି ସେତିକି ବଢ଼ି ବଢ଼ି ଚାଲିଥିଲା। କେବେ କେବେ ବଡ଼ ପୁଅପିଲାଙ୍କୁ ନେଇ ଅତ୍ୟନ୍ତ ଅରୁଚିକର ସମ୍ବାଦ ଶୁଣିବାକୁ ମିଳିଲେ, ମନଟା ବିକ୍ଷେଇ ଉଠେ। ମୁଁ ଭାବେ ଏ'ଭଳି ବଦନାମିଆଁ କଲେଜରେ ନାଁ ଲେଖେଇ ମସ୍ତ ବଡ଼ ଭୁଲ କରିଛି। ଯାହା ତ ହେବାର ହେଲାଣି। ଇଏ ବି.ଏ.ଟା ପାସ୍ କରି ଦେଇ ଗଲେ, ଗଲା।

ସେଦିନ ଅସରାଏ ବର୍ଷା ହେଇଗଲା। ତରବର ହେଇ ଯାଉ ଯାଉ, ମୋ ଗୋଡ଼ଟା ଖସିଗଲା। କଚାଡ଼ି ହେଇ ପଡ଼ିଲି, ଗୋଟାଏ ଖାଲ ଭିତରେ। ପଡ଼ିଯିବାଟା ମୋତେ ଯେତେ ବାଧି ନଥିଲା, ତା'ଠାରୁ ବେଶି ବାଧିଥିଲା, ମୋ କପଡ଼ା ପତ୍ରର ଅବସ୍ଥା ଦେଖି। କେମିତି ବସ୍‌ରେ ଯିବି ? ସାହାଯ୍ୟ ଆଉ ସହାନୁଭୂତି ପାଇଁ ଏପଟ ସେପଟ ଚାହୁଁଥିଲି।

ଚିହ୍ନା ମାରୁତି କାର୍‌ଟା ଆସି ମୋ ପାଖରେ ଅଟକି ଗଲା। ସେଥିରୁ ବାହାରି ପଡ଼ିଲା, ଆମର ସିନିୟର ସନ୍ତୋଷ। ମୋ ନାଆଁ ଧରି କହିଲା - "ଭିତରେ ବସ। ମୁଁ ନେଇ ତମ ଘରେ ଛାଡ଼ି ଦେଇ ଆସିବି।"

ସନ୍ତୋଷ ବିଷୟରେ ମୁଁ ଆଗରୁ ଶୁଣିଥିଲି, ଅନେକ କଥା। ବହୁତ ବଦମାସ ପିଲାଟା। ଦୁନିଆ ପ୍ରକାର ବଦନାମୀ ତା'ନାଆଁରେ। ସବୁ ଗଣ୍ଡଗୋଳରେ ସେ ରିଂ ମାଷ୍ଟର ଥିଲା। ପଢ଼ା ଛାଡ଼ି ଏବେ କ'ଣ ଗୋଟାଏ ବିଜନେସ୍ କରୁଛି।

ମୁଁ ସେ ଗାଡ଼ିରେ ବସିବାକୁ କୁଣ୍ଠିତ ହେଲି। ସେ ପୁଣି ନରମ ଗଳାରେ କହିଲା - "ଡରୁଛ କ'ଣ ମ ! ମୁଁ କ'ଣ ବାଘ ନା'ଭାଲୁ ହେଇଛି। ଏମିତି ଅବସ୍ଥାରେ ତମକୁ କେଉଁ ଗାଡ଼ି ନେବ କହିଲ ? ତେବେ କ'ଣ ଚାଲି ଚାଲି ଯିବ।"

ମୁଁ ଆଉ ଥରେ ମୋ ଦେହକୁ ଚାହିଁଲି। ହେ, ଭଗବାନ ! ଏତେ ବେଶି ଖରାପ ହେଇ ଯାଇଛି ? ବସ୍ ଯଦି ମୋତେ ନ ନିଏ, ତେବେ ଚାଲିକି ଯିବା ମୋଟେ ସମ୍ଭବ ନୁହଁ। ବାଟ ଯାକର ଲୋକେ ବୁଲି ବୁଲି ଚାହିଁବେ। ଯଦି କେହି ପରିଚିତ ଲୋକ ଦେଖି ପକେଇବେ ନା' - ତେବେ ତ ସବୁ କାମ ସରିଲା।

ଥତମତ ହେଇ ସନ୍ତୋଷ ଗାଡ଼ିରେ ବସିଲି। ଆମ ଘରେ ପହଞ୍ଚିବା ପର୍ଯ୍ୟନ୍ତ ଆମେ ଦୁହେଁ ଚୁପ୍‌ଚାପ୍ ଥିଲୁ। ଦୁଆରେ ଓହ୍ଲେଇ ପଡ଼ି ତାକୁ ଧନ୍ୟବାଦଟିଏ ଜଣେଇଲି। ମୋ ପିଣ୍ଡରେ ସତେ ଯେମିତି ପ୍ରାଣ ପଶିଗଲା।

ତା'ପର ଦିନ ଅନୁଭବ କଲି, କଲେଜର ଝିଅମାନେ ଖାଲି ମୋତେ କେମିତି ଅଲଗା ଦୃଷ୍ଟିରେ ଚାହୁଁଛନ୍ତି । ମୋର ଅତି ଅନ୍ତରଙ୍ଗ ସାଙ୍ଗ ସୀମା ମୋ ପାଖକୁ ଲାଗି ଆସି କହିଲା - "ଗତକାଲି ତୁ ସନ୍ତୋଷ ସାଙ୍ଗରେ କୁଆଡ଼େ ପାର୍କ ବୁଲି ଯାଇଥିଲୁ ? ତମ ଦି'ଜଣଙ୍କର କାଳେ ଗୁପ୍ତରେ ଗୁପ୍ତରେ ପ୍ରେମ ଚାଲିଛି ବୋଲି

କଲେଜର ଝିଅମାନେ ଏବେ ସବୁ କଥା ହଉଥିଲେ। ସତ କଥାଟା କ'ଣ କହିଲୁ।"

- 'ଯେଉଁଥି ପାଇଁ ମୋର ଡର । ଏତେ ସଂଯତ, ଏତେ ସାବଧାନ। ସେଇ ଖାଲରେ ପୁଣି ମୁଁ ପଡ଼ିଗଲି। ହେ ଭଗବାନ! ଆମ କଲେଜ ଝିଅଙ୍କୁ ଆଉ ପାରି ହବନାହିଁ। ଏମାନେ କଞ୍ଚା ମାଛରେ ନୁହେଁ, ଜୀଅନ୍ତା ମାଛରେ ବି ପୋକ ପକେଇ ଦେଇ ପାରନ୍ତି।

ସୀମାକୁ କମନ୍‌ରୁମ୍‌କୁ ଡାକି ନେଇ ସବୁ ସତକଥା କହିଦେଲି। ସେ ମୋ ବଦନାମୀରେ ସହାନୁଭୂତି ଜଣେଇଲା। କିନ୍ତୁ କଥାଟା ଧୀରେ ଧୀରେ ସମଗ୍ର କଲେଜକୁ ସଂକ୍ରମିତ ହେଇଗଲା। କାହା ତୁଣ୍ଡରେ ମୁଁ ହାତ ଦେଇ ଅଟକେଇବି? କେତେ ଜଣଙ୍କୁ ସଫେଇ ଦେବି? ଘରେ ବୋଉକୁ ସବୁ କଥା ଖୋଲି କହିଦେଲି ସତ; କିନ୍ତୁ ବୋଉ କ'ଣ ବୁଝିଲା କେଜାଣି, ମୋତେ ପରାମର୍ଶ ଦେଲା - "ତୋର ଆଜିଠୁଁ ଆଉ କଲେଜ ଯିବା ଦରକାର ନାହିଁ।"

ତା'ପର ଦିନ ଶୁଣିଲି, ବାପା-ବୋଉ ମୋ ବାହାଘର କଥା ହେଉଛନ୍ତି। ଚମକି ପଡ଼ିଲି। ତେବେ କ'ଣ ବୋଉ ମୋ କଥାକୁ ବିଶ୍ୱାସ କଲା ନାହିଁ? ସନ୍ତୋଷ ସାଙ୍ଗରେ ମୁଁ ପାର୍କ ବୁଲି ଯାଇନାହିଁ ବୋଲି, ତାକୁ ଆଉ କେମିତି ବୁଝେଇ ଥାଆନ୍ତି। କଲେଜ ଝିଅଙ୍କ କଥାଠୁ ମୋ ବୋଉ ଉପରେ ମୋର ରାଗ ବେଶି ବଢ଼ିଗଲା। ଦୁଃଖରେ ମ୍ରିୟମାଣ ହେଇ ପଡ଼ିଥିଲି। ଘରଟା ଯେମିତି ମୋତେ ପାଗଳଖାନା ପରି ଲାଗିଲା। ଯେତେ ଶୀଘ୍ର ଏ'ଘରୁ ଚାଲିଯିବା ଉଚିତ ମନେ କଲି। ସେହିଦିନ ରାତିରେ ବୋଉ ମୋ ବାହାଘର କଥା ମୋତେ ପଚାରିଲା, ମତାମତ ଚାହିଁଲା। ମୁଁ ଆଗପଛ ବିଚାର ନକରି ମୋର ସମ୍ମତି ଜଣେଇ ଦେଲି।

ସତକୁ ସତ ମୋର ବାହାଘର ହେଇଗଲା।

କେତେ ଖାଲ ଢ଼ିପ ଦେଇ ଏହା ଭିତରେ ଅଠର ବର୍ଷ ବିତି ଗଲାଣି। ଝିଅ ସୋନୀ ଏବେ କଲେଜରେ ପଢୁଛି। ଜିନ୍ ପ୍ୟାଣ୍ଟ, ମିନି ସ୍କର୍ଟ ପିନ୍ଧି ଯେତେବେଳେ ତା'ବୟଫ୍ରେଣ୍ଡ ସାଙ୍ଗରେ ସେ ରାଜରାସ୍ତାରେ ଚାଲି ଯାଉଛି। କାହିଁ ତାକୁ ତ କେହି ଅନେଇ ରହୁ ନାହାନ୍ତି? କଲେଜ ଝିଅମାନେ ତ ତା'ପ୍ରତି ଈର୍ଷା କରୁ ନାହାନ୍ତି। ମୋ ଝିଅ କାହା ସାଙ୍ଗରେ ପାର୍କ ବୁଲି ଯାଉଛି ବୋଲି କେହି ଅଭିଯୋଗ ବି କରୁ ନାହାନ୍ତି।

ଏ'ସବୁ ସମ୍ଭବ ହେଇପାରିଲା କେମିତି? ସୋନୀର ବାପା ଏ'ଜଟିଳ ପ୍ରଶ୍ନର ଉତ୍ତର ଅତ୍ୟନ୍ତ ସରଳ ଭାଷାରେ ବୁଝେଇ ଦେଲେ - "ସ୍ଥାନ-କାଳ-ପାତ୍ର ଉପରେ ଏ'ସବୁ ଭାବନା ନିର୍ଭର କରେ। ତମେ ଯେଭଳି ପରିବେଶରେ ରହିଛ, ଯେଭଳି ସଂସ୍କୃତିକୁ ଆଦରି ନେଉଛ, ତାହା ତମକୁ କେବେ ଖରାପ ଲାଗିବ ନାହିଁ। ଏଥିପାଇଁ ଦରକାର ନିଜକୁ ସମୟର ରୁଚି ସହିତ ମେଳ କରି ଚଳେଇ ନେବା। ତା'ପରେ ଜୀବନ ହେଇଯାଏ, ଅତ୍ୟନ୍ତ ସରଳ ଆଉ ସୁଗମ।

୦୦୦



# ସିଫନ୍-ଗଗନ

ଆଜି ରବିବାର। ସକାଳୁ ସିଫନ୍ ଯାଇଛି ଯେ, ଘରକୁ ଫେରି ନାହିଁ। ରାତି ଦଶଟା ବାଜିଲାଣି। ମାଆ ଶେଫାଳି କାନ୍ଦି କାନ୍ଦି ଥକି ପଡ଼ିଲେଣି। ଏତେବେଳ ଯାଏ ମନୋଜର ଦେଖା ନାହିଁ। ସାହି ପଡ଼ିଶାର ସମସ୍ତଙ୍କୁ ସେ ନେହୁରା ହେଇ ସାରିଲାଣି। ସମସ୍ତ ଚିହ୍ନା ପରିଚିତ ପିଲା, ଆଖପାଖ ସବୁଆଡ଼େ ଖୋଜି ଖୋଜି ଖାଲି ହାତରେ ଫେରିଲେଣି। ସ୍କୁଲକୁ ପଠେଇ ସେ ପ୍ରଧାନ ଶିକ୍ଷକଙ୍କ ଠାରୁ ନାସ୍ତିବାଣୀ ଶୁଣି ସାରିଲାଣି। ମନୋଜ ଫେରିଲେ, ତାଙ୍କୁ କି' ଉତ୍ତର ଦେବ?

ଶେଫାଳି ପୁଣି ଥରେ ଦାଣ୍ଡ ଦୁଆରକୁ ଆସି ଚାହିଁଲା। କାଳେ କେହି କିଛି ଖବର ଧରି ଆସିଥିବେ।

ଶେଫାଳି ମନକୁ ମନ କହୁଥିଲା, 'ମନୋଜ ଘରକୁ ଫେରି ଆସିଲେ, କିଛି ଗୋଟାଏ କାମ ହେଇ ପାରନ୍ତା। ସେ ନିଜେ ଯାଇ ଟିକେ ଭଲକି ବୁଝାବୁଝି କରନ୍ତେ। ସିଫନ୍‌ର ସାଙ୍ଗସାଥୀଙ୍କ ଘରକୁ ଲୋକ ପଠେଇ ବୁଝନ୍ତେ।'

'ମନୋଜ କଥା ମୋତେ ଭଲ ଭାବେ ଜଣା। ସିଫନ୍ ଘରକୁ ଫେରି ନାହିଁ ଅର୍ଥ, ସେ ବୁଝିବେ - ମୁଁ ତାକୁ ଗାଳିମାଡ଼ ଦେଇଛି। ନହେଲେ ଏମିତି କିଛି ଗୋଟାଏ ଖରାପ କାମ କରିଛି, ଯେଉଁଥି ପାଇଁ ସିଫନ୍ ରାଗିକି ଘର ଛାଡ଼ି ପଳେଇଛି।

ପଡ଼ିଶାର ବେହେରାବାବୁ ଆମର ସୁଖଦୁଃଖର ସାଥୀ। ସେ କଲେଜରୁ ଫେରିଲା ମାତ୍ରେ ଯେମିତି ଶୁଣିଲେ, ସିଫନ୍ କୁଆଡ଼େ ଯାଇଛି, ସେତିକିବେଳୁ ସ୍କୁଟର ଧରି କୁଆଡ଼େ ବୋଲି କୁଆଡ଼େ ବୁଲି ଖୋଜିଲେ। ଶେଷରେ ଆସି କହିଲେ, "ମୁଁ ଥାନାରେ ରିପୋର୍ଟ ଦେଇ ଆସିଛି। ସେମାନେ ଆଖପାଖର ସବୁ ଥାନାକୁ ଖବର ଦେଇଦେବେ। କାଲିସୁଦ୍ଧା ସିଫନ୍ ମିଳିଯିବ।"

କାଲି ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ମୋର ଆଉ ଧୈର୍ଯ୍ୟ ନାହିଁ। ବିଭିନ୍ନ ଲୋକ ବିଭିନ୍ନ ପ୍ରକାର ବାଜେ କଥା କହି ମୋ ମୁଣ୍ଡକୁ ଖରାପ କରି ସାରିଲେଣି। କିଏ କହୁଛି - "ପିଲାଚୋର ତାକୁ ନେଇ ଯାଇଥିବେ।"

ମିଛରେ କି ସତରେ କେଜାଣି? ମାଇପେ ଦି'ଜଣ ଆସି କହିଲେ, "ଆଜି ଗୋଟାଏ ବାବାଜୀ ସାଙ୍ଗରେ ସିଫନ୍ ଯାଉଥିବାର କିଏ ଜଣେ ଦେଖିଥିଲା।"

ବେହେରାବାବୁ କହିଥିଲେ, "ସିଫନ୍‌ଟା ବଦମାସ୍। ପାଖରେ କିଛି ପଇସା ଥିବ, ଟ୍ରେନ୍‌ରେ ବସି କୁଆଡ଼େ ଚାଲି ଯାଇଥିବ। ପଇସା ସରିଗଲେ, ବଳେ ଫେରି ଆସିବ। ବ୍ୟସ୍ତ ହେବାର କିଛି ନାହିଁ ।"

ବାବାଜୀ ସାଙ୍ଗରେ ସିଫନ୍ ଯାଉଥିବା କଥାଟା କିନ୍ତୁ ସବୁଠୁ ବେଶି ପରିମାଣରେ ପ୍ରଚାରିତ ହେଇ ଯାଇଥିଲା। ଆଖପାଖ ସାହି ପଡ଼ିଶା ଲୋକେ ଦିନଯାକ ଚୁପ୍‌ଚାପ୍ ହେଲେ। ସଂଜ ହେବାରୁ ଅସହାୟ ଅବସ୍ଥାରେ ଶେଫାଳି କାନ୍ଦିବାକୁ ଆରମ୍ଭ କରିଛି ଯେ, ଏତେ ରାତି ଯାଏ, ଆଖିରୁ ଲୁହ ଝରିବା ବନ୍ଦ ହେଇନାହିଁ। ଆଜି ରାତିଟା କେମିତି ପାହିବ।

ରାତି ବଢ଼ି ଚାଲିଛି। ଦାଣ୍ଡ କବାଟ ଆଉଜେଇ ଦେଇ ଶେଫାଳି ଠାକୁର ଘରକୁ ଯାଇ ଅଧିଆ ପଡ଼ିଲା। ମନେ ମନେ ମାଆ ତାରିଣୀଙ୍କୁ ନଡ଼ିଆ, ଆଖଣ୍ଡଳମଣିଙ୍କୁ ମେଳା ଦେବାକୁ ମାନସିକ କଲା। ଦୁଇ ହାତ ଯୋଡ଼ି ସାରା ରାତି ସେମିତି ବସି ରହିଲା। ଆଖିର ପତା ପଡୁ ନାହିଁ। ନିଦ ଆସିବ କେମିତି ?

ମନୋଜ ଏଇମିତି ଛୋଟବଡ଼ ଠିକାଦାରୀ କାମ କରେ। ବାଲି ସିମେଣ୍ଟ ଚାଲାଣ କରେ। ବିଭିନ୍ନ ଜାଗାରେ ବୁଲି ଅର୍ଡର ସଂଗ୍ରହ କରି ବେଶ୍ ଦୁଇ ପଇସା ରୋଜଗାର କରନ୍ତି। ପରିବାର କହିଲେ, ସ୍ୱାମୀ, ସ୍ତ୍ରୀ, ପୁଅଟିଏ, ଝିଅଟିଏ। ଆଗ ସ୍ତ୍ରୀ ସିଫନ୍‌କୁ ଜନ୍ମ ଦେଇ ଆରପାରିକୁ ଚାଲିଗଲା ପରେ, କେବଳ ପୁଅର ଦେଖାଶୁଣା କରିବା ପାଇଁ ସେ ଦ୍ୱିତୀୟ ବିବାହ କରିଥିଲା ଶେଫାଳିକୁ। ବର୍ଷକ ପରେ ଶେଫାଳିର ମଧ୍ୟ ଝିଅଟିଏ ଜନ୍ମ ହେଲା। କିନ୍ତୁ ମନୋଜ କେବେ ଲକ୍ଷ୍ୟ କରି ନାହିଁ, ଶେଫାଳିର ସାବତ ମାଆର ବ୍ୟବହାର। ପ୍ରଥମରୁ ହିଁ ସେ ସିଫନ୍‌କୁ ଆଦରି ଯାଇଥିଲା। ସିଫନ୍ ମଧ୍ୟ ଅନୁଭବ କରି ନାହିଁ, ଶେଫାଳି ତା'ର ସାବତ ମାଆ ବୋଲି।

ଆଜି କ'ଣ ପାଇଁ ସିଫନ୍ ଘରଛାଡ଼ି ଚାଲିଗଲା। ଶେଫାଳି ଠିକ୍ ଭାବରେ ଜାଣିପାରୁ ନାହିଁ। କିନ୍ତୁ ସାଇ ପଡ଼ିଶାର ସ୍ତ୍ରୀ ଲୋକଙ୍କ ତୁଣ୍ଡରେ ହାତ ଦେଇ କିଏ ବା ଅଟକେଇ ପାରିବ ?

ଯିଏ ଯାହା ପାରୁଛନ୍ତି, ସେ କଥା ଅନ୍ୟଜଣକୁ କହି ଦେଉଛନ୍ତି। 'ଶେଫାଳି କୁଆଡ଼େ ସିଫନ୍‌କୁ ଭଲ ଦୃଷ୍ଟିରେ ଦେଖେ ନାହିଁ। ସବୁବେଳେ ମାରି ଦେବାକୁ ଚକ୍ରାନ୍ତ କରେ। ନିଜର ସୁନ୍ଦର ରୂପ ଦେଖେଇ ସେ ମନୋଜକୁ ମେଣ୍ଢା କରି ରଖିଛି। ଆଗରୁ ସେ ଯାହା ଟିକେ ସିଫନକୁ ପୁଅ ବୋଲି ଭାବୁଥିଲା, ଏବେ ତା'ର ନିଜର ତ ଝିଅ ହେଲାଣି। ତାକୁ ସବୁ ସଂପତ୍ତିର ଅଧିକାରୀ କରିବାକୁ ନିଜ ବାଟରୁ କଣ୍ଟା ସଫା କରି ଦେଇଥିବ।'

କେତେ ଜଣ ଅଜ୍ଞ ବିଜ୍ଞ ଦୃର, ପଡ଼ିଶାର ଲୋକେ କୁହାକୁହି ହେଲେଣି, 'ମନୋଜ ଘରେ ନଥିବାର ସୁଯୋଗ ଦେଖି ଶେଫାଳି ପୁଅକୁ ବାବାଜୀ ହାତରେ ଟେକି ଦେଇଛି। ସେମାନେ କୁଆଡ଼େ ଆଖିରେ ଦେଖିଛନ୍ତି, ଗୋଟାଏ ଦାଢ଼ିବାଲା ବାବାଜୀ ସିଫନ୍‌କୁ ଧରି ଘରୁ ବାହାରି ଯାଉଥିଲା।

ବାବାଜୀ ତାକୁ ପୁଳାଏ ଖଣ୍ଡ ଟଙ୍କା ଧରେଇ ଦେଇଥିବ।

ଆଜିକାଲି ଗଜା ଟୋକା ବୟସର ପିଲାଙ୍କୁ ଧରି ନେଇ ସେମାନେ ବଡ଼

ବଡ଼ ଡାକ୍ତରଖାନାରେ ବିକ୍ରୀ କରି ଦେଉଛନ୍ତି। ସେଠି ତା'ର କିଡ୍‌ନି, ଆଖି, ହୃତପିଣ୍ଡଠାରୁ ଆରମ୍ଭ କରି ବିଭିନ୍ନ ଅଂଶ କାଢ଼ି ନେଇ ରୋଗୀମାନଙ୍କ ଠାରୁ ଲକ୍ଷ ଲକ୍ଷ ଟଙ୍କା ରୋଜଗାର କରୁଛନ୍ତି। କେତେ ଜଣ ଡାକ୍ତର ଏ'ବେପାରରେ ପରା ମଧ୍ୟସ୍ଥତା କରୁଛନ୍ତି। ସିଫନ୍ ଆଜି ରାତି ସୁଦ୍ଧା ଦିଲ୍ଲୀ କି କଲିକତା ଚାଲାଣ ହେଇ ଯାଇଥିବ।'

ଆଖପାଖ ପାନ ଦୋକାନ, ଚାହା ଦୋକାନ, ବଜାର ଛକରେ ଏହିଭଳି ବିଭିନ୍ନ ପ୍ରକାର ବାଜେ କଥା ଆଲୋଚନା ଚାଲି ଥିବାର ଶୁଣି କେତେ ଜଣ ପିଲା ଆସି ତାଙ୍କ ବାପା ମାଆଙ୍କ ଆଗରେ କହିଲେଣି । କେତେ ଆଉ ସହି ପାରିବ ଶେଫାଳି ! ମୁଣ୍ଡଟା ତା'ର ସତେ ଯେମିତି ଫାଟିଗଲା ପରି ଲାଗୁଛି। ସକାଳେ ଯାହା ଜଳଖିଆ ଦୁଇଟା ଖାଇଥିଲା। ଦିନରେ କି ରାତିରେ ଘରେ ରନ୍ଧା ହେଇନାହିଁ। ତା ଅବସ୍ଥା ଦେଖି ଝିଅଟା କାନ୍ଦି କାନ୍ଦି ଶୋଇ ପଡ଼ିଛି। ସେ ବି କିଛି ଖାଇଲା ନାହିଁ। ସାତ ଆଠ ବର୍ଷର ଝିଅଟା ସିଏ କ'ଣ କିଛି ବୁଝି ପାରୁନାହିଁ ? ଲୋକଙ୍କଠାରୁ ସିଫନ୍ ବିଷୟରେ ଏଣୁତେଣୁ କଥା ଶୁଣି ଶୁଣି ସେ ବି ଅଥୟ ହେଇ ପଡ଼ିଲାଣି। ମାଆ ପ୍ରତି ତା'ର ମଧ୍ୟ ଖରାପ ଧାରଣା ସୃଷ୍ଟି ହେଇଯିବା ସ୍ୱାଭାବିକ। କିନ୍ତୁ କ'ଣ କରାଯିବ ? କ'ଣ କହି ସେ ତାକୁ ବୁଝେଇବ ?

ବେହେରା ବାବୁଙ୍କ ଝିଅ ତାକୁ ଡାକି ନେଇ ତାଙ୍କ ଘରେ କ'ଣ ବୁଝେଇବି କେଜାଣି, ସେ ବିଛଣାରେ ପଡ଼ି ରହି ମୁଟ୍‌ମୁଟ୍‌କି ଅନେଇ ରହିଥିଲା। ଅନେକ ରାତି ପରେ ତା'ର ଆଖିମୁଦି ହେଇ ପଡ଼ିଛି। ଶେଫାଳି କାନ୍ଥ ଘଡ଼ିକୁ ଚାହିଁଲା। ରାତି ତିନିଟା। ଆଉ ଘଣ୍ଟାଏ କି ଦି'ଘଣ୍ଟା ପରେ ସକାଳ ହେଇଯିବ। ଲୋକେ ଆସି ଦୁଆରେ ଜମା ହେଇ ପଚାରି ଚାଲିବେ, 'ସିଫନ୍ କାଲି ଫେରିଛି ନା' ନାହିଁ।'

କ'ଣ କହି ଉତ୍ତର ଦେବ ? କେତେ ଜଣଙ୍କୁ ସିଏ ନିଜ ସଂପର୍କରେ ସଫେଇ ଦେଇପାରିବ ?

କବାଟ ଠକ୍ ଠକ୍ ଶବ୍ଦରେ ଶେଫାଳିର ହୃତ୍‌ସ୍ପନ୍ଦନ ବଢ଼ିଗଲା। ସେ ଭାବିଲା - 'ଏତେ ରାତିରେ ଆଉ କିଏ ଆସିପାରେ ? ଭଗବାନ ନିଶ୍ଚୟ ମୋ ଡାକ ଶୁଣିଥିବେ, ସିଫନ୍ ଫେରି ଆସିଥିବ।'

- 'କେଜାଣି ଆଉ କେହି କିଛି ଦୁଃସମ୍ବାଦ ବି ଦେବାକୁ ଆସି ଥାଇପାରେ। ପୋଲିସକୁ ଖବର ଦିଆ ଯାଇଥିଲା। ସେମାନେ କେହି ଆସିଥିବେ କି ?

ମନୋଜ ପାଖକୁ କେତେ ଥର ଫୋନ୍ କଲିଣି । କିନ୍ତୁ ତାଙ୍କୁ ଫୋନ୍‌ରେ ପାଇ ପାରୁନାହିଁ। ବିଭିନ୍ନ ଜାଗାକୁ ଜରୁରୀ ଖବର ଦେଇଛି। ମନୋଜକୁ ତୁରନ୍ତ ଘରକୁ ପଠେଇ ଦେବା ପାଇଁ। ଜରୁରୀ ଖବର ପାଇ ମନୋଜ ଘରକୁ ଫେରିଲେ କି ?'

ଅନେକ ଦ୍ୱନ୍ଦ୍ୱ, ଅନେକ ଅନିଶ୍ଚିତତା ମଧ୍ୟରେ ସେ ଯାଇ ଦାଣ୍ଡଦୁଆର କବାଟକୁ ଧୀରେ ଅଳ୍ପ ଖୋଲି ଦେଖିଲେ। ଯାହା ହେଉ, ମନୋଜ ଆସି ଯାଇଛନ୍ତି।

'ହେ, ଭଗବାନ ! ଅଧା ଜୀବନ ରହିଗଲା।'

ବିପଦ ବେଳେ ଘର ଲୋକ ପାଖରେ ଥିଲେ କେତେ ବଳ, କେତେ ସାହସ ହୁଏ, ସେ କଥା ବର୍ତ୍ତମାନ ଶେଫାଳି ବୁଝି ପାରିଲେ।

ସିଫନ୍ କେମିତି, କେବେ ଘର ଛାଡ଼ି ଚାଲି ଯାଇଛି, ଟିକିନିଖି କରି ସେ ମନୋଜ ପାଖରେ ବର୍ଣ୍ଣନା କରି ଚାଲିଲେ। ମନୋଜ ନୀରବ ରହି ସବୁ ଶୁଣିଲେ, ଶେଫାଳିକୁ ସାନ୍ତ୍ୱନା ଦେଇ କହିଲେ, "ମୁଁ ଗତକାଲି ସିଫନ୍‌କୁ କହିଥିଲି, ପିକ୍‌ନିକ୍ ଯିବୁ ନାହିଁ। ବୋଧହୁଏ, ସେଇଥି ପାଇଁ ସେ ରାଗିକି ମାମୁଘର କି ଆଉ କୁଆଡ଼େ ଚାଲି ଯାଇଥିବ। ତା'ପାଖରେ କିଛି ଟଙ୍କା ଥିଲା, ସେତେକ ସରିଗଲେ, ବଳେ ଫେରି ଆସିବ ଯେ।"

ଶେଫାଳିର ମନ କିନ୍ତୁ ବୁଝିଲା ନାହିଁ। ସେ ମନୋଜକୁ ବ୍ୟସ୍ତ କରି ଚାଲିଲା - "ସବୁ କାମ ପଛକୁ ପକେଇ ତମେ ଆଗ ସିଫନ୍‌କୁ ଆଣି ମୋ ପାଖରେ ଦିଅ।"

ମନୋଜ କିଛି ଟଙ୍କା ଯୋଗାଡ଼ କରି ମୋବାଇଲ ଫୋନ୍‌ଟିକୁ ଧରି ସକାଳୁ ସକାଳୁ ବାହାରି ପଡ଼ିଲା, ସିଫନ୍‌ର ସନ୍ଧାନରେ।

ସିଫନ୍‌ର ମାମୁ-ମାଇଁ ପରାମର୍ଶ ଦେଲେ - "ଆମର ଏଇ ସେକ୍ଟର ଛଅରେ ଜଣେ ବାବା ରହୁଛନ୍ତି, ସେ ଜଣେ ସର୍ବଜ୍ଞ। ଅତୀତ-ଭବିଷ୍ୟତ କଥା କହି ପାରନ୍ତି। ତମେ ବାପା ମାଆ ଦୁହେଁ ତାଙ୍କରି ଶରଣ ପଶ। ସେ ନିଶ୍ଚୟ ସିଫନ୍‌କୁ ଆଣି ଦେଇ ପାରିବେ।"

ଅସହାୟ ମଣିଷ ଅଥଳ ପାଣିରେ ବୁଡ଼ି ଯାଉଥିବା ବେଳେ କୁଟାଖିଅକୁ ମଧ୍ୟ ଭରସା କରିବାକୁ ବାଧ୍ୟ ହୁଏ।

ମନୋଜ ପୂର୍ବରୁ ଏ'ବାବାଜୀ ମାତାଜୀ ଓ ତାନ୍ତ୍ରିକମାନଙ୍କୁ ମୋଟେ ବିଶ୍ୱାସ କରେ ନାହିଁ। ବରଂ ତାଙ୍କୁ ଭଣ୍ଡ, ଠକ କହି ଗାଳି ଦିଏ। ଆଜି ବିପଦରେ ପଡ଼ି ସେ ସେହିଭଳି ବାବାଜୀଙ୍କ ଶରଣ ପଶିବାକୁ ମନସ୍ଥ କଲା। ବାବାଜୀଙ୍କ ଠିକଣା ଯୋଗାଡ଼ କରି ସେ ଘରକୁ ଫେରିଲା।

ମୋଟର ସାଇକେଲରେ ଶେଫାଳିକୁ ବସେଇ ଦୁହେଁ ସେକ୍ଟର ଛଅ ବାବାଙ୍କ ଆଡ୍ଡାକୁ ଗଲେ। ବାବାଙ୍କ ରୂପ ଭେକ, ଚାଲିଚଳନ ଅବଶ୍ୟ ସନ୍ଦେହ ଜନକ ଥିଲା। ତଥାପି ଚେଲା ଜଣଙ୍କର ମଧୁର ବ୍ୟବହାର ଆଉ କପଟ ଆଚରଣରେ ସେମାନେ ବାବାଙ୍କ ଜାଲରେ ଛନ୍ଦି ହେଇ ପଡ଼ିଲେ।

ବାବା ମଶାଣି ଚଣ୍ଡୀଙ୍କ ପୂଜାପାଠ କରି ସାରି, ସିଫନ୍ ହଜିବା କଥା ଟିକିନିଖି ସବୁ ଶୁଣିଲେ। ଖୁବ୍ ଶୀଘ୍ର ସିଫନ୍‌କୁ ସେ ଆଣି ଦେଇ ପାରିବେ ବୋଲି ଭରସା ମଧ୍ୟ ଦେଲେ। ଏଥିପାଇଁ ସେ କୌଣସି ପାରିଶ୍ରମିକ ନେବେ ନାହିଁ। କେବଳ ଚଣ୍ଡୀପୂଜା ଓ ସନ୍ଧିପୂଜା ପାଇଁ ଯାହା ପୂଜା ସାମଗ୍ରୀ ଦରକାର। ସେତେକ ତାଙ୍କୁ ଦେବାକୁ ପଡ଼ିବ।

ଶେଫାଳି ପୁଅକୁ ପାଇବା ପାଇଁ ଅତ୍ୟନ୍ତ ବ୍ୟାକୁଳ ଥିଲା। ସେ ବାବାଙ୍କ କଥା ଶୁଣି ତରବର ହେଇ ସେଥିରେ ରାଜି ହେଇଗଲା। କହିଲା - "ବାବା ! ଆମେ ତ ସେ ସବୁ ଜିନିଷ ଯୋଗାଡ଼ କରି ପାରିବୁ ନାହିଁ। ଆପଣଙ୍କୁ ଆମେ ଟଙ୍କା ଦେଇଦେବୁ। ଆପଣ ଦୟା କରି ପୂଜା ସାମଗ୍ରୀ ଚେଲାଙ୍କ ଦ୍ୱାରା ସଂଗ୍ରହ କରି ଆଣି ଆଜି ହିଁ ପୂଜା କାମଟି ସାରି ଦିଅନ୍ତୁ।"

ଧୂର୍ତ୍ତ ଚେଲାଜଣକ ପୂଜା ସାମଗ୍ରୀ ପାଇଁ ମାତ୍ର ହଜାରେ ଟଙ୍କା ଅଗ୍ରୀମ ରଖିନେଲା। ପ୍ରତିଶ୍ରୁତି ଦେଲା - "ତମକୁ ଯଦି ସମୟ ମିଳେ, ଆଜି ରାତି

ବାରଟାରେ ଏଇଠିକି ଆସି ପୂଜା ଦେଖିଯିବ। ମଶାଣି ଚଣ୍ଡୀ ନିଜେ ବତେଇ ଦେବେ, 'ପୁଅ କେଉଁଠି ଅଛି।'

- ପୁଅ ପାଇଁ ଚିନ୍ତା କରନା। ଆମେ ମଶାଣି ଚଣ୍ଡୀଙ୍କୁ କହିବୁ ସେ ପୁଅକୁ ଶୀଘ୍ର ତୁମ ଘରକୁ ପଠେଇ ଦେବେ।"

ଚେଲାର କଥା ଶୁଣି ମନୋଜ ଆଉ ଶେଫାଳି ପରସ୍ପରର ମୁହଁକୁ ଅନେଇଲେ। ମନୋଜ ଆଗତୁରା କହି ପକାଇଲା - "ଦେଖନ୍ତୁ ବାବା! ଆପଣ ଭଲ କରି ପୂଜା କରନ୍ତୁ। ବରଂ ଆଉ ଯାହା ଖର୍ଚ୍ଚ ହେବ, ଆମେ ଦେବାକୁ ପ୍ରସ୍ତୁତ ଅଛୁ। କିନ୍ତୁ ଆମକୁ ଶୀଘ୍ର ପୁଅ ଦରକାର।"

ଚେଲା ଅଭୟ ବାଣୀ ଦେଇ କହିଲା- "ଠିକ ଅଛି, ଆମ କାମ ଆମେ କରୁଛୁ। କାଲି ସୁଦ୍ଧା ଯଦି ପୁଅ ନଫେରେ, ତେବେ ଆସି ମୋତେ ଦେଖା କରିବ।"

ବାବା ଓ ଚେଲାଙ୍କ ଉପରେ ସଂପୂର୍ଣ୍ଣ ଭରସା ରଖି ପତିପତ୍ନୀ ଦୁହେଁ ଘରକୁ ଫେରିଲେ।

ଏହା ଭିତରେ ସିଫନ୍ ହଜିବା ଖବର ସମଗ୍ର ସହରରେ ଚର୍ଚ୍ଚାର ବିଷୟ ହେଇ ଯାଇଥିଲା। କେତେ ପ୍ରକାର ନୂଆ ନୂଆ ମନଗଢ଼ା କଥା ପ୍ରଚାରିତ ହେଉଥିଲା। ମନୋଜକୁ ଯେଉଁମାନେ ଚିହ୍ନି ନଥିଲେ, ସେମାନେ ବି ପଚରା ଉଚୁରା କରି ତାଙ୍କ ଘରର ଅବସ୍ଥିତି, ପୁଅର ଉଚ୍ଚତା ଏବଂ ରଙ୍ଗ-ଗଠନ ବିଷୟ ପଚାରି ବୁଝାବୁଝି କରୁଛନ୍ତି। କେହି କେହି ଉଡ଼ା ଖବର ଶୁଣି ତାଙ୍କ ପରିବାରକୁ ମଧ୍ୟ ବ୍ୟସ୍ତ କରି ପକାଉଛନ୍ତି।

ବାବାଙ୍କ କହିବା ଅନୁସାରେ ପୁଅ ଫେରିଲା ନାହିଁ। ଶେଫାଳି ପୁଣି ବ୍ୟସ୍ତ ହେଲା। ମନୋଜ ତାକୁ ସାଙ୍ଗରେ ଧରି ଆଉ ଥରେ ବାବାଙ୍କ ପାଖକୁ ଗଲା।

ବାବା ସଂପୂର୍ଣ୍ଣ ଧ୍ୟାନରେ ଥିଲେ। ଚେଲା ଜଣକ ବୁଝେଇ ଦେଲେ - "ଆପଣଙ୍କ କାମରେ ହିଁ ବାବା ବ୍ୟସ୍ତ ଅଛନ୍ତି। ଆଉ ଅଧା ଘଣ୍ଟା ପରେ ବାବାଙ୍କ ଧ୍ୟାନ ଭଙ୍ଗ ହେବ। ଆପଣ ତାଙ୍କ ସହିତ କଥାବାର୍ତ୍ତା ହେଇ ପାରିବେ।"

ବାବାଙ୍କ ଧ୍ୟାନ ଭଗ୍ନ ହେଲା। ମନୋଜ ଆଉ ଶେଫାଳିଙ୍କ ପରି ଆହୁରି ଅନେକ ଦର୍ଶନ ପ୍ରାର୍ଥୀ ବାବାଙ୍କୁ ଅପେକ୍ଷା କରି ବସିଥିଲେ। ସମସ୍ତେ ତାଙ୍କ ପାଦ ତଳେ ପଡ଼ି ଶରଣ ପଶିଲେ। ତାଙ୍କ ଇଂଗିତରେ ମନୋଜକୁ ଏକ ନିର୍ଜନ ଗୃହକୁ ଚେଲା ଡାକି ନେଲା। ବାବା ତା' ଉପରେ ଆଜି ସ୍ୱତନ୍ତ୍ର ଭାବେ ପ୍ରସନ୍ନ ହେଇଛନ୍ତି। ତେଣୁ ତାକୁ ଆଗ ନିମନ୍ତ୍ରଣ କରାଯାଇଛି। ଶେଫାଳିର ମନରେ ଅନେକ ଆଶା। ଆଜି ନିଶ୍ଚୟ ସିଫନ୍‌ର ମିଳିଯିବ। ଖବର, ବାବା ତାଙ୍କୁ ଦେବେ।

ବାବାଙ୍କ ଠାରୁ ଆଶିର୍ବାଦ ଆଉ ପରାମର୍ଶ ଧରି ମନୋଜ ଶେଫାଳି ପାଖକୁ ଫେରି ଆସିଲା। ତାଙ୍କର ଶୁଖିଲା ମୁହଁକୁ ଦେଖି ଶେଫାଳି ଏକଦମ ଡରି ଗଲାଣି।

- 'ତେବେ କ'ଣ ପୁଅକୁ କିଏ ମାରି ଦେଇଛି। ମାଆ ମଶାଣି ଚଣ୍ଡୀ ତାକୁ ଖୋଜି ପାଉ ନାହାନ୍ତି?'

ମନୋଜ କହିଲେ - "ବାବା କହୁଛନ୍ତି, ପୁଅ ଜୀବିତ ଅଛି। ବର୍ତ୍ତମାନ ସେ ଆମ ଘରର ଦକ୍ଷିଣ ଦିଗରେ ଜଣକ ଘରେ ବସିଛି। ସେ ଆସିବାକୁ ରାଜି ହେଉ ନାହିଁ। ଆଉ ଗୋଟାଏ ବଡ଼ ପୂଜା ବେଦବ୍ୟାସ ମଶାଣିରେ କରିବାକୁ ହେବ।

ତେବେ ଯାଇ ମାଆ ମଶାଣି ଚଣ୍ଡୀ ପୁଅକୁ ଜବରଦସ୍ତି ଟେକି ଆଣି ଆମ ଘରେ ଛାଡ଼ି ଦେଇଯିବେ। ଏଥିପାଇଁ ଆଉ ସାତ ହଜାର ଟଙ୍କା ଦରକାର ହେବ।"

ଶେଫାଳି ଚମକି ପଡ଼ିଲେ, 'ସାତ ହଜାର ଟଙ୍କା!'

'ଆଉ ତ କିଛି ଉପାୟ ନାହିଁ। ପୁଅଠୁ ତ ସାତ ହଜାର ଟଙ୍କା ବଡ଼ ନୁହଁ। ଯେମିତି ହେଲେ ପୁଅକୁ ଖୋଜି ବାହାର କରିବାକୁ ହେବ। ଯାଉ ପଛେ ସାତ ହଜାର, କି'ଦଶ ହଜାର।'

- ଶେଫାଳି ପଚାରିଲା - "ଏତେ ଟଙ୍କା ଆଣିବ କୋଉଠୁ ?"

- "ଦେଖିବା, କୋଉଠୁ ଧାର ଉଧାର କରି ଯୋଗାଡ଼ କରିବା" - ମନୋଜ କହିଲା।

- "ନାଇଁ, ତମେ ମୋର ଏ'କାନଫୁଲ ଆଉ ସୁନାହାର ନେଇ ବିକ୍ରି କରିଦିଅ। ଏ'ଗୁଡ଼ାକ ରହି ମୋର କ'ଣ ହବ ? ମୋର ସିଫନ୍ ଦରକାର। ତମେ ରାଜି ହେଇଯାଅ। ବାବାଙ୍କୁ କହିଦିଅ, ସେ ଏବେ ଠାରୁ କାମ ଆରମ୍ଭ କରି ଦିଅନ୍ତୁ। ଆମେ କାଲି ପୂରା ଟଙ୍କା ଆଣି ଦେଇଯିବୁ।"

ଶେଫାଳିର ବ୍ୟାକୁଳତା ଦେଖି ମନୋଜ ଆଉ କିଛି କହି ପାରିଲା ନାହିଁ। ଚେଲା ପାଖକୁ ଯାଇ ସବୁ କଥା କହି ଦେଇ ଆସିଲା। ତା'ପରଦିନ ନଗଦ ଟଙ୍କା ନେଇ ଦୁହେଁ ବାବାଙ୍କ ପାଦତଳେ ଥୋଇ ଶରଣ ପଶିଲେ।

ବାବା ପରାମର୍ଶ ଦେଲେ, "କାଲି ରାତି ଅର୍ଦ୍ଧରେ ବେଦବ୍ୟାସ ମଶାଣି ଘାଟରେ ମଶାଣି ଚଣ୍ଡୀଙ୍କ ସନ୍ଧି ପୂଜା ହେବ। ତମେ ପତ୍ନୀ-ପତି ଦୁହେଁ ଘାଟକୁ ଆସିବ। ସାଙ୍ଗରେ ଆଉ କୌଣସି ଲୋକଙ୍କୁ ଆଣିବ ନାହିଁ। ସେଇଠୁ ପୁଅକୁ ଧରି ଫେରିବ। ହଁ, ଏ'କଥାଟାକୁ ଆଗରୁ କାହାରି ପାଖରେ ପ୍ରଘଟ କରିବ ନାହିଁ। ମାତା କୋପ କରି ପାରନ୍ତି। କାମରେ ବାଧା ସୃଷ୍ଟି ହେଇପାରେ। କଥାଟାକୁ ତୁମ ଦୁଇ ଜଣଙ୍କ ପାଖରେ ଗୁପ୍ତ ରଖିବ। ତେବେ ଯାଇ କାମଟା ସଫଳ ହେବ। ଯାଅ, କାଲି ସନ୍ଧ୍ୟାରେ ଆସି ମୋତେ ଦେଖା କରିବ।"

ବାବାଙ୍କ କଥାଗୁଡ଼ାକ ମନୋଜକୁ ଭଲ ଲାଗିଲା ନାହିଁ। ପଦ୍ମ ଘୁଞ୍ଚ ଘୁଞ୍ଚ ଯାଉଛି। ଆଜିକାଲି ହେଇ ତିନି ଦିନ ବିତି ଯାଇ ସାରିଲାଣି। ସିଫନ୍‌କୁ ପାଇବାକୁ ଆହୁରି ଦୁଇ ଦିନ ଅପେକ୍ଷା କରିବାକୁ ପଡ଼ିବ। ଏଣେ ଶେଫାଳିର ଆଉ ଧୈର୍ଯ୍ୟ ନାହିଁ।

ତଥାପି ଦୁହେଁ ବାବାଙ୍କ ପରାମର୍ଶକୁ ଶିରୋଧାର୍ଯ୍ୟ କରି ଘରକୁ ଫେରିଲେ। ବାଟରେ ମନୋଜକୁ ଶେଫାଳି ଆଉ ଥରେ ସଚେତନ କରାଇ ଦେଲା - "ବାବାଙ୍କ କହିବା ଅନୁସାରେ, ଏ'କଥା କାହାରିକୁ ଜଣାଇବ ନାହିଁ। ପୁଅ ଭଲରେ ଭଲରେ ମିଳିଯାଉ, ତା'ପରେ ଯୋଉ କଥା।"

ଘରେ ପହଞ୍ଚି ମନୋଜ ଅନେକ ସମୟ ଧରି ନୀରବରେ ବସି ରହିଲା। ସମସ୍ତ ବାରଣ ସତ୍ତ୍ୱେ ସେ ତା'ର ଅନ୍ତରଙ୍ଗ ଠିକାଦାର ବନ୍ଧୁ ମିଶ୍ରବାବୁଙ୍କୁ ଫୋନ୍‌ରେ ସବୁ କଥା କହିଦେଲା।

ସେ ଦୁହେଁ କଥାବାର୍ତ୍ତା ହେଇ ନିଷ୍ପତ୍ତି ନେଲେ, ଶେଫାଳିକୁ ମଶାଣି ପର୍ଯ୍ୟନ୍ତ ନେବେ ନାହିଁ। ଦୁଇ ବନ୍ଧୁ ମୋଟର ସାଇକେଲ ନେଇ ବାବାଙ୍କ ପୂଜା ଦେଖିବାକୁ ଯିବେ।

ମିଶ୍ରବାବୁ ତ ଭାରି ସାହସୀ ଲୋକ । ରାତି ଅଧରେ ସେ ମନୋଜଙ୍କୁ ଠିକ୍ ଭାବରେ ସାହାଯ୍ୟ କରି ପାରିବେ । ତେଣୁ ଶେଫାଳି ସେଥିରେ ପ୍ରତିବାଦ କଲା ନାହିଁ । ତାକୁ ତ ପୁଅ ଦରକାର । ନିଜେ ସ୍ତ୍ରୀ ଲୋକଟା ରାତିରେ ମଶାଣିକୁ ନଯିବା ବରଂ ଭଲ ।

ମିଶ୍ରବାବୁଙ୍କ ସହିତ ମନୋଜ ସଂଜବେଳୁ ଯାଇ ବାବାଙ୍କ ଆଡ୍ଡାରେ ହାଜର ହେଇଗଲେ । ବାବାଙ୍କ  ପରାମର୍ଶ ଅନୁସାରେ ଗୋଟାଏ ଅଟୋରିକ୍ସା ସାରାରାତି ପାଇଁ ରିଜର୍ଭ ହେଇଗଲା । ଏତେ ବଡ଼ ରିସ୍କ କାମ ପାଇଁ ଅଟୋବାଲା ତିନି ଶହ ଟଙ୍କା ନେବ ବୋଲି କହିଲା । ମନୋଜ ସେଥିରେ ରାଜି ହେଇଗଲା । ରାତି ଦଶଟା ବେଳକୁ ବାବା ଓ ଚେଲା ଅଟୋରେ କ'ଣ ସବୁ ପୂଜା ସାମଗ୍ରୀ ଚଢ଼େଇ ଦେଇ ଚାଲିଲେ, କୋଣାର୍କ ଟକିଜ୍ ପାଖ ଦୀପ୍ତି ହୋଟେଲକୁ । ମିଶ୍ରବାବୁ ଆଉ ମନୋଜ ମୋଟର ସାଇକେଲକୁ ବାବାଙ୍କ ଆଡ୍ଡାରେ ରଖି ଦେଇ ସେହି ଅଟୋରିକ୍ସାରେ ବସିଥିଲେ । ବାବା ବାଟରେ ପ୍ରସ୍ତାବ ଦେଲେ, ପୂଜା ପୂର୍ବରୁ ଆମକୁ ସବୁ ପେଟଭରି ଖାଇବାକୁ ପଡ଼ିବ । ଦୀପ୍ତି ହୋଟେଲ ଛଡ଼ା ମୁଁ ଆଉ କେଉଁଠି ଖାଏ ନାହିଁ । ଆସନ୍ତୁ ସମସ୍ତେ ମିଶି ଏଇଠି ଖାଇଦେବା ।"

ବାବାଙ୍କ ପ୍ରସ୍ତାବ ଉପରେ କାହାରି କିଛି ମନ୍ତବ୍ୟ ଦେବାର ନଥିଲା । ସମସ୍ତେ ବାବାଙ୍କର ପଦାନୁସରଣ କଲେ । ବାବା ଓ ଚେଲା ମନଭରି ସୋମରସ ପାନ କଲେ । ରାମପକ୍ଷୀ ମାଂସ ରୋଷ୍ଟ୍ ପେଟଭରି ଖାଇଲେ ।

ମନୋଜ ସମସ୍ତ ଖର୍ଚ୍ଚ ବହନ କରିଦେଲେ । ରାତି ବାରଟା ବେଳକୁ ଅଟୋରିକ୍ସା ବେଦବ୍ୟାସ ମଶାଣି ଆଡ଼କୁ ଚାଲିଲା ।

ମାତ୍ର ଅଧା କିଲୋମିଟର ବାଟ ଯାଇଛି କି ନାହିଁ, ରେଲୱେ ଓଭରବ୍ରିଜ ପାଖରେ ଠିଆ ହୋଇଥିବା ପୋଲିସ  ଗାଡ଼ିକୁ ଦେଖି ଅଟୋବାଲା ଅଟକି ଗଲା । ଦୁଇଟା ପୋଲିସ ଗାଡ଼ିରୁ ଓହ୍ଲେଇ ଅଟୋରିକ୍ସା ଆଡ଼କୁ ମାଡ଼ି ଆସୁଥିବାର ଦେଖାଗଲା ।  ବାବା ଓ ଚେଲା ତରବର ହେଇ ଓହ୍ଲେଇ ପଡ଼ି ପଛୁଆ ଚାଲିଲେ ।

ମନୋଜ ଏବଂ ମିଶ୍ରବାବୁ ତାଙ୍କ ପଛେ ଚାଲିଲେ । ବାବା କହିଲେ, "ଏ'ବାଟ ଦେଇ ଆଉ ଯାଇ ହେବ ନାହିଁ । ଆମକୁ ଛେଣ୍ଡ୍ ବାଟେ ଯିବାକୁ ହେବ ।"

ବାବାଙ୍କ କାର୍ଯ୍ୟ କଳାପ କେମିତି ସନ୍ଦେହ ସନ୍ଦେହ ଲାଗିଲା ।

ମନୋଜବାବୁ ଏବଂ ମିଶ୍ରବାବୁ ଟିକେ ପଛକୁ ରହିଯାଇ କଥାବାର୍ତ୍ତା ହେଲେ, 'ଯେମିତି ହେଲେ, ବାବାଙ୍କ ହାଉରୁ ବର୍ତ୍ତମାନ ଉଦ୍ଧାର ପାଇବା ହେଲାଣି, ମୁଖ୍ୟ କାମ । ମୋଟର ସାଇକେଲ ପଛେ ଯାଉ । ପୋଲିସ ଯଦି ଆମକୁ ସନ୍ଦେହ କରି ଥାନାରେ ଅଟକେଇ ରଖେ, ତେବେ ମାନ ଇଜ୍ଜତ ଯିବ । ବାବାଙ୍କୁ ଅନୁସରଣ କଲେ, ଜୀବନଟା ବି ଯାଇପାରେ ।'

ସେମାନେ ଲକ୍ଷ୍ୟ କରୁଥିଲେ, ଦ୍ରୁତ ଗତିରେ ବାବା ଓ ଚେଲା ଦୁହେଁ ଘନ ଅନ୍ଧକାର ଭିତରେ କୁଆଡ଼େ ହଜିଗଲେ । ମୋବାଇଲ୍ ଫୋନ୍ ଦ୍ୱାରା ମନୋଜ ଘରକୁ ଫୋନ୍ କଲା । ଦୁଇ ଜଣ ବନ୍ଧୁ ମୋଟର ସାଇକେଲ ଆଣି ଦୁର୍ଗତ ଦୁଇ ବନ୍ଧୁଙ୍କୁ ଘରକୁ ନେଲେ ।

ତା'ପର ଦିନ ଏ'ଘଟଣା ସହର ପାଇଁ ଏକ ବିଶେଷ ଚର୍ଚ୍ଚାର ବିଷୟ

ହେଇଗଲା। ଯୁବ ବନ୍ଧୁମାନେ ମନୋଜକୁ ପରାମର୍ଶ ଦେଲେ, 'ତୁରନ୍ତ ବାବାଙ୍କ ନାମରେ ପୋଲିସରେ ଏଫ.ଆଇ.ଆର. ଦିଅନ୍ତୁ।'

ବୟସ୍କ ଲୋକେ ଏବଂ ମହିଳାମାନେ କହିଲେ - "ଯାହା ତ ହେବାର ହେଇଗଲା। ବାବାଙ୍କୁ ନେଇ ଥାନାରେ ପୂରେଇଲେ, ପୁଅର ଅନିଷ୍ଟ ହେଇପାରେ। ସେ ଟଙ୍କା ଗଲେ ଯାଉ, କିନ୍ତୁ ବାବାଙ୍କୁ ହଇରାଣ କଲେ, ସେ କ'ଣ ବୋଲି କ'ଣ କରିଦେବେ।"

ଶେଷରେ ଯୁବଗୋଷ୍ଠୀର ପରାମର୍ଶକୁ ହିଁ ମନୋଜ ଗ୍ରହଣ କରିନେଲା। ଥାନାବାବୁ ବାବାଙ୍କୁ ଧରି ବହେ ଛେଚିଲେ। ବାବା ମାଡ଼ ଭୟରେ ବଳକା ଟଙ୍କାତକ ଫେରାଇ ଦେଇ ମୁକ୍ତି ପାଇଲେ।

ଏଣେ ମନୋଜବାବୁଙ୍କ ପରିବାରର ଭୟ ବଢ଼ିଗଲା। ବାବା କେତେବେଳେ କ'ଣ କରିଦେବେ କେଜାଣି ?

ମନୋଜବାବୁ ବିଭିନ୍ନ ଜାଗାକୁ ଯାଇ ପୁଅକୁ ଖୋଜି ଚାଲିଥା'ନ୍ତି। ବିଭିନ୍ନ ଥାନାରେ ଫଟୋ ଆଉ ବିବରଣୀ ଦେଇ ଆସିଥା'ନ୍ତି। ଆକାଶବାଣୀ ଆଉ ଦୂରଦର୍ଶନରେ ନିରୁଦ୍ଦିଷ୍ଟ ବ୍ୟକ୍ତିଙ୍କ ସଂପର୍କରେ ସୂଚନା ମଧ୍ୟ ଦେଇଥିଲେ।

ହଠାତ୍ ମନୋଜ ବନ୍ଧମୁଣ୍ଡା ପୋଲିସ ଷ୍ଟେସନରୁ ଖବର ପାଇଲେ, 'ସିଫନ୍ ଭଳି ପିଲାଟିଏ ବୁଲାବୁଲି କରୁଥିବାର ଖବର ମିଳିଛି। ତାକୁ ଥାନାକୁ ଅଣା ଯାଇଥିଲା, କିନ୍ତୁ ତା'ମୁଣ୍ଡ ଠିକ୍ ଭାବେ କାମ କରୁନାହିଁ। ସେ ଏଣୁ ତେଣୁ ଗପୁଥିଲା। ଆଜି ଥାନାରୁ ଲୁଚିକି ପଳେଇଛି। ଖୋଜାଖୋଜି କଲେ, ମିଳି ଯାଇପାରେ।'

ମନୋଜ ସବୁକାମକୁ ପଛରେ ପକେଇ ଧାଇଁଲା ବନ୍ଧମୁଣ୍ଡା। ଚିହ୍ନା ଅଚିହ୍ନା ସମସ୍ତଙ୍କୁ ପଚରା ଉଚୁରା କଲା। କେତେଜଣ ସିଫନ୍‌କୁ ଦେଖିଛନ୍ତି ବୋଲି କହିଲେ। ସେଦିନ ସିନା ସିଫନ୍‌ର ଖବର କିଛି ମିଳିଲା ନାହିଁ। କିନ୍ତୁ ଅନେକ ଆଶା ରଖି ଅନେକ ଲୋକଙ୍କୁ ନିଜ ଠିକଣା ଆଉ ଫୋନ୍ ନମ୍ବର ଦେଇ ଘରକୁ ଫେରିଲା।

ଦୁଇ ଦିନ ପରେ ବନ୍ଧମୁଣ୍ଡା ଥାନାରୁ ପୁଣି ଥରେ ଫୋନ୍ ଆସିଲା, ଏଥରର ସମ୍ବାଦଟି ଥିଲା ଅତ୍ୟନ୍ତ ଉଦ୍‌ବେଗଜନକ। "ସିଫନ୍ ରେଳଲାଇନ୍‌ରେ ଅତ୍ୟନ୍ତ ମୁର୍ମୁଷ ଅବସ୍ଥାରେ ପଡ଼ିଛି। ଆପଣ ତୁରନ୍ତ ଆସି ତାକୁ ଉଦ୍ଧାର କରି ନିଅନ୍ତୁ।"

ଶେଫାଳି ଖବର ପାଇ କନ୍ଦାକଟା କଲା। ମନୋଜର ଦୁଇ ଜଣ ବନ୍ଧୁ ବନ୍ଧମୁଣ୍ଡାଠାରୁ ଅଳ୍ପ ଦୂର ରେଳ ଲାଇନରୁ ମୁର୍ମୁଷ ଅବସ୍ଥାରେ ପଡ଼ିଥିବା ବାଳକକୁ ଠାବ କଲେ। ପିଲାଟାର ଅବସ୍ଥା ଏତେ ଖରାପ ଯେ, ଶୀଘ୍ର ତାକୁ ଜରୁରୀ ଚିକିତ୍ସା ନକଲେ, ସେ ନିଶ୍ଚୟ ମରିଯିବ। ମୁଣ୍ଡର ଖପୁରୀଟା ଭାଙ୍ଗିଯାଇଛି। ରକ୍ତ ଜୁଡୁବୁଡୁ ଶରୀର।

ଆଗପଛ ବିଚାର ନକରି ତାକୁ ସେମାନେ ରାଉରକେଲାର ବଡ଼ ଡାକ୍ତରଖାନାରେ ଭର୍ତ୍ତି କରିଦେଲେ। ଅତି ଯତ୍ନରେ ତା'ର ଚିକିତ୍ସା ଚାଲିଲା। ବାପା ମାଆ କିମ୍ବା ଅନ୍ୟ କୌଣସି ଲୋକଙ୍କୁ ରୋଗୀକୁ ଦେଖା କରିବାକୁ ସୁଯୋଗ ମିଳିଲା ନାହିଁ।

ଲୋକ ପୁଣି କୁହାକୁହି ହେଲେ - "ସିଫନ୍ ମିଳିଗଲା ସିନା, କିନ୍ତୁ ତାକୁ

ଏମିତି ଅବସ୍ଥା କିଏ କଲା ? ନିଶ୍ଚୟ ସେ ବାବାଜୀ ତାକୁ ତନ୍ତ୍ର ବଳରେ ଅଧାମରା କରି ପକେଇ ଦେଇଥିବ। ବାବାକୁ ଥାନାକୁ ନେବାର, ଏ'ହେଉଛି ଫଳ।"

ଚାଳିଶ ଦିନ ପରେ ଶେଫାଳିକୁ ଭିତରକୁ ଯିବାକୁ ଅନୁମତି ମିଳିଲା। ସେ ତନ୍ନ ତନ୍ନ କରି ପୁଅକୁ ଦେଖିଲା। ଖଣ୍ଡିଆ ଖାବରା ଦେହ। ବ୍ୟାଣ୍ଡେଜ୍ ବନ୍ଧା ମୁଣ୍ଡ। କିନ୍ତୁ ମାଆ ତାରିଣୀଙ୍କ ଠାରୁ ଆଣି ସିଫନ୍ ହାତରେ ବାନ୍ଧି ଦେଇଥିବା ଲାଲ ରଙ୍ଗର ବ୍ରତ ଖଣ୍ଡିଏ ଯେମିତି ଥିଲା, ସେମିତି ଅଛି। ପୁଅକୁ କୁଣ୍ଢେଇ ପକେଇ ଚୁମା ପରେ ଚୁମା ଦେଇ ଚାଲିଲା। ଭଗବାନଙ୍କ ନିକଟରେ କୃତଜ୍ଞତା ଜଣେଇଲା।

ଧୀରେ ଧୀରେ ପୁଅର ଅବସ୍ଥା ସୁଧୁରିବାରେ ଲାଗିଲା। ପୁଅ ପାଇଁ ସେମାନେ ପାଣି ପରି ପଇସା ଖର୍ଚ୍ଚ କରି ଚାଲିଥା'ନ୍ତି। ଧାର ଉଧାର କରଜର ସୀମା ନାହିଁ। ଦୈନିକ ତିନି ଶହ ଟଙ୍କାର ଇଂଜେକ୍‌ସନ୍ । ଗୋଟାଏ ପରେ ଗୋଟାଏ ଅପରେସନ୍ । ତଥାପି ଖାତିରି ନାହିଁ। ଦିନେ ହିସାବ କରି ସେ ଦେଖିଲେ, ପୁଅର ଖର୍ଚ୍ଚ ହିସାବ ତିନି ଲକ୍ଷ ଟଙ୍କାରେ ପହଞ୍ଚି ଗଲାଣି।

ପୁଅକୁ ଘରକୁ ନେଇ ଆସିଲେ। ଶହ ଶହ ଲୋକ ଘେରି ତାକୁ ଦେଖିଲେ। ହାତଗୋଡ଼ ଠିକ୍ ଭାବେ କାମ କରୁ ନଥିବାରୁ ତା'ପାଇଁ ଦୈନିକ କାଲୁପଡ଼ା ମାଲିସ ଶେକ ଡାକ୍ତରବାବୁ ଆସି ଦେଇ ଚାଲିଲେ। ତରଳ ଖାଦ୍ୟରୁ ସାଧାରଣ ଖାଦ୍ୟ ଖାଇବାକୁ ଦିଆଗଲା। ପୁଅର ଟିକେ ଟିକେ ପାଟି ଖୋଲିଲା। ଅତି ଅସ୍ପଷ୍ଟ ଶବ୍ଦରୁ ଟିକେ ଟିକେ ଶବ୍ଦ ବୁଝି ହେଲା। କିନ୍ତୁ ସ୍ମରଣ ଶକ୍ତି ଖୁବ୍ ଧୀରେ ଧୀରେ ଆସୁ ଥିବାର ଲକ୍ଷ୍ୟ କରାଗଲା।

ଦିନେ ମନୋଜ ପୁଅକୁ ନିରୀକ୍ଷଣ କରି ଡାକ୍ତରବାବୁଙ୍କୁ ପଚାରିଲା, "ସିଫନ୍‌ର ଦାନ୍ତ ତ ଆଗରୁ ବଡ଼ ଦିଶୁଥିଲା, କିନ୍ତୁ ଏବେ ଛୋଟ ହେଇଗଲା କେମିତି ?"

ଡାକ୍ତରବାବୁ ବୁଝେଇ ଦେଲେ, 'ଦୀର୍ଘ ଦିନ ସାଲାଇନ୍ ଏବଂ ପାଇପ୍ ବାଟେ ତାକୁ ଖାଦ୍ୟ ଯୋଗାଇବାକୁ ପଡୁଥିଲା। ତେଣୁ ଦାନ୍ତଗୁଡ଼ିକର ଆକାର ଛୋଟ ହେଇଯିବା ସ୍ୱାଭାବିକ କଥା।'

ଦିନେ ପୁଅର ସ୍ମରଣଶକ୍ତି ପରୀକ୍ଷା କରୁ କରୁ ତାକୁ ମନୋଜ ପଚାରିଲା, "ତୋର ନାଆଁ କ'ଣ କହିଲୁ ?"

- "ଗଗନ।"
- "ତମ ଘର କୋଉଠି ?"
- "ଖୋର୍ଦ୍ଧା।"
- "ବାପାଙ୍କ ନାଆଁ କ'ଣ ?"
- "ନିବାସ।"
- "ବାପା କ'ଣ କରନ୍ତି ?"
- "ମୁଲିଆ, ପଥର କାଟେ।"

ସମସ୍ତେ ଆଶ୍ଚର୍ଯ୍ୟ ହେଇଗଲେ।

ଶେଫାଳି ଭାବିଲା - 'ପୁଅ ତା'ଗତଜନ୍ମର କଥା କହୁଥିବ। ନଚେତ୍ କୌଣସି ଭୂତ ତା'ଉପରେ ସବାର ହେଇଛି ନିଶ୍ଚୟ।'

ଡାକ୍ତରବାବୁ ପରାମର୍ଶ ଦେଲେ, "ଧୀରେ ଧୀରେ ତା'ର ସ୍ମରଣ ଶକ୍ତି ଫେରିବ। ତାକୁ ବେଶି ବ୍ୟସ୍ତ କରାନ୍ତୁ ନାହିଁ। ଧୈର୍ଯ୍ୟ ଧରି ଅପେକ୍ଷା କରନ୍ତୁ।"

ଏ'ଘଟଣାର ଆଠ ଦିନ ପରେ ହଠାତ୍ କେହି ଜଣେ ମନୋଜ ଘରେ ଖବର ଦେଲା ଯେ, ସିଫନ୍ ଫେରିଛି। ସେ ଗୋଟାଏ ସାଇକେଲ ଦୋକାନ ପାଖରେ ଠିଆ ହେଇ କାନ୍ଦୁଛି। ଶେଫାଳି ଓ ମନୋଜ ଆଶ୍ଚର୍ଯ୍ୟ ହେଇଗଲେ। ସେ କହିଲେ, "ସିଫନ୍ ତ ଆମ ଘରେ ଶୋଇଛି। ସେ ପୁଣି ଆସିବ କୋଉଠୁ ?"

ଲୋକଜଣକ କହିଲେ, "ହଁ, ଆଜ୍ଞା ! ସେ ଆପଣଙ୍କ ପରିବାର ଓ ତା'ମାମୁଘର ଲୋକଙ୍କ କଥା ଠିକ୍ ଠିକ୍ କହୁଛି। ମାଡ଼ ଭୟରେ ସେ ତିନି ମାସ ତଳେ ଘରୁ ଲୁଚି ରାୟଗଡ଼ା ପଳେଇ ଯାଇଥିଲା। ବିଭିନ୍ନ ଜାଗା ବୁଲି ବୁଲି ଏବେ ରାଉରକେଲାରେ ଆସି ପହଞ୍ଚିଛି।"

ଆଶ୍ଚର୍ଯ୍ୟରୁ ଅତି ଆଶ୍ଚର୍ଯ୍ୟ ଘଟଣା। ପରୀକ୍ଷା କରିବାକୁ ମନୋଜ ଓ ଶେଫାଳି ମୋଟର ସାଇକେଲ ଧରି କଥିତ ସାଇକେଲ ଦୋକାନରେ ପହଞ୍ଚିଲେ। ସିଫନ୍ ସେଇଠି ସେମିତି ଠିଆ ହେଇଥିଲା।

ବାପା ମାଆଙ୍କୁ ଦେଖି ଭୋ ଭୋ ହେଇ କାନ୍ଦି ଉଠିଲା। ଖାଇବା ପିଇବା ଅଭାବରୁ ମୁହଁ ଶୁଖି କଳା ପଡ଼ି ଯାଇଛି। ଶେଫାଳି ଆଉ ମନୋଜ ନିଜ ପୁଅକୁ ମଧ୍ୟ ଚିହ୍ନି ପାରୁ ନଥିଲେ।

ଅନେକ ପ୍ରଶ୍ନର ସବୁ ଠିକ୍ ଉତ୍ତର ପାଇ ସିଏ ହିଁ ଅସଲ ସିଫନ୍ ବୋଲି ଜାଣିଲେ। ସାଙ୍ଗରେ ଘରକୁ ଆଣିଲେ।

ଏ'ଖବରଟା ପୁଣି ଥରେ ଚର୍ଚ୍ଚାର ବିଷୟ ହେଇଗଲା।

ଏଣେ ଗଗନର ପାଟି ପରିଷ୍କାର ଖୋଲି ଗଲାଣି ସତ, କିନ୍ତୁ ତାକୁ ପଚାରିଲେ, ପୂରା ନାମ କିମ୍ବା ଗାଆଁର ନାଆଁ କହି ପାରୁନାହିଁ।

ଶେଫାଳି କାନ୍ଦୁଛି, ମୁଁ ଭଗବାନଙ୍କୁ ଅନେକ ପ୍ରାର୍ଥନା କରିଥିଲି। ମୋର ଗୋଟିଏ ପୁଅ ହଜି ଯାଇଥିଲା ବୋଲି, ଏବେ ମୁଁ ଦୁଇଟି ପୁଅ ପାଇ ଯାଇଛି।

ମନୋଜ କହୁଛି, - "ଗଗନ ମୋର ପୂର୍ବଜନ୍ମରେ ବାପା କିମ୍ବା ପୁଅ ଥିଲା। ଆମେ ତା'ର ଋଣୀ ଥିଲୁ। ଏ'ଜନ୍ମରେ ତା'ର ସେବା କରିବାର ସୁଯୋଗ ପାଇଛୁ।"

OOO

(ସତ୍ୟ ଘଟଣା)



# କୁହୁଡ଼ି

ପ୍ରେମାନନ୍ଦବାବୁ ବସ୍ ଟିକେଟଟିକୁ ଭଲ କରି ଯାଞ୍ଚ କରିନେଲେ। ବସ୍ ଛାଡ଼ିବାର ସମୟ ଲେଖା ଅଛି - ରାତି ଦଶଟା । ସିଟ୍ ନମ୍ବର ବାର । ଟିକେଟର ମୂଲ୍ୟ ଦୁଇଶହ ଟଙ୍କା। କିନ୍ତୁ ପ୍ରକୃତରେ କାଉଣ୍ଟରରେ ନେଇଥିଲେ, ମାତ୍ର ଶହେ ଚାଳିଶ ଟଙ୍କା । ତା'ମାନେ ଗୋଟାଏ ଟିକେଟରେ ସେମାନେ ନିଜର କମିଶନ ନେଲା ପରେ ବି ଷାଠିଏ ଟଙ୍କା ଛାଡ଼ି ପାରୁଛନ୍ତି ।

ରାଉରକେଲାରୁ ଭୁବନେଶ୍ୱର ଯେତେଗୁଡ଼ିଏ ବସ୍ ଚାଲିଛି, ସବୁଠି ତ ସେଇମିତି ରିହାତି ମିଳୁଛି । ଖାଲି ବାହାଘର ବେଳେ କି ବିଶେଷ ଦିନମାନଙ୍କରେ ଗହଳି ଦେଖି ସେମାନେ ତା'ର ଫାଇଦା ନିଅନ୍ତି। ଛାଡ଼, ସେ ବସ୍ଷ୍ଟାଣ୍ଡର କାଉଣ୍ଟର କଥା ।

ଅନ୍ୟମନସ୍କ ହେଇଗଲେ ପ୍ରେମାନନ୍ଦ ବାବୁ ।

ଘଡ଼ିକୁ ଚାହିଁଲେ, ରାତି ନଅଟା ବାଜିଲାଣି । ସେ ଭାବିଲେ, "ସେକ୍ଟର ଭିତରୁ ବାହାରି ବସ୍ଷ୍ଟାଣ୍ଡରେ ପହଞ୍ଚିବାକୁ ଅବଶ୍ୟ ପନ୍ଦର, କୋଡ଼ିଏ ମିନିଟ୍ ଲାଗିବ, ତଥାପି ଅଧାଘଣ୍ଟା ଆଗରୁ ସେଇଠି ପହଞ୍ଚି ଯିବାଟା ଭଲ ।

ଗତଥରର ଯେଉଁ ବିରକ୍ତିକର ଅଭିଜ୍ଞତା ଅଛି, ତାକୁ ନ କହିବା ଭଲ ।

କଥା କ'ଣ କି, ମୋର ଗୋଟାଏ ଅତି ଜରୁରୀ କାମ ଥିବାରୁ ଭୁବନେଶ୍ୱର ଯିବାକୁ ଟିକେଟ ଖଣ୍ଡେ ଯଥେଷ୍ଟ ଆଗରୁ କିଣିଥିଲି। ଏଥର ଭଳି ସେଥର ବି ରିହାତି ମିଳିଥିଲା।  ବସ୍‌ର ସିଟ୍ ନମ୍ବର ଥିଲା ବାର । ବସ୍ ଛାଡ଼ିବାକୁ ପାଞ୍ଚ ମିନିଟ୍ ଅଛି, ମୁଁ ଯାଇ ଦେଖେ ତ, ବାର ନମ୍ବର ସିଟ୍‌ରେ ଜଣେ ବୟସ୍କ ଲୋକ ବସିଛନ୍ତି। ଆମ ଦୁଇ ଜଣଙ୍କ ଭିତରେ ଅଶାନ୍ତି ସୃଷ୍ଟି ହେବା ସ୍ୱାଭାବିକ। ତାଙ୍କ ଟିକେଟରେ ବି ସିଟ୍ ନମ୍ବର ବାର ଲେଖା ହେଇଥିଲା । କଣ୍ଡକ୍ଟର, କାଉଣ୍ଟରବାଲା ଠାରୁ ଆରମ୍ଭ କରି ଆହୁରି ତିନି ଚାରିଟା ଟୋକା ଆସି ମୋତେ କହିଲେ, "ଆପଣ ୪୩ ନମ୍ବର ସିଟ୍‌କୁ ଚାଲି ଯାଆନ୍ତୁ। ନହେଲେ, ଆଗ ସିଟ୍ ପାଇଁ ପୂରା ଟଙ୍କା ଦେବାକୁ ପଡ଼ିବ।" ମୁଁ କାବା ହେଇଗଲି। ସକଳ ପ୍ରକାର ଯୁକ୍ତିତର୍କ ମୋର ବିଫଳ ହେଲା।

ସେଦିନ ସେହି ବସ୍‌ରେ ଆଉ ଯିବାକୁ ଇଚ୍ଛା ହେଉ ନଥାଏ। କିନ୍ତୁ ଜରୁରୀ କାମ ଥିବାରୁ ଏବଂ ଅନ୍ୟ ବସ୍‌ରେ ସେଭଳି ଆଗ ସିଟ୍ ନମିଳିବାରୁ ବାଧ୍ୟ ହେଇ

ସେହି ବସ୍‌ରେ ଗଲି। ବାଟରେ ଅବଶ୍ୟ କଣ୍ଡକ୍ଟର ବାବୁ ଦୟା ପରବଶ ହେଇ ତାଙ୍କ ସିଟ୍‌ରେ ବସିବାକୁ ସୁଯୋଗ ଦେଇଥିଲେ। ତା'ଫଳରେ ମୋର ସବୁ ରାଗ-ଅଭିମାନ ଦୂର ହେଇ ଯାଇଥିଲା।

ସତରେ ଯାତ୍ରା ଆରମ୍ଭରୁ ଏଭଳି କଳିଗୋଳ ଆଉ ଅଶାନ୍ତି ଯାତ୍ରାଟାକୁ ମୋଟେ ସୁଖକର କରାଏ ନାହିଁ।

- 'ଏଥର କ'ଣ ହେବ କେଜାଣି ?'

ପ୍ରେମାନନ୍ଦ ବାବୁଙ୍କ ମନଟା ଚଞ୍ଚଳ ହେଇ ଉଠିଲା। ଆଉ ଥରେ ବାଥରୁମ୍ ଯାଇ ଫେରି ଆସିଲେ। ଗାମୁଛାରେ ମୁହଁ ପୋଛି ପୋଛି ଝରକା ଆଡ଼କୁ ଚାଲିଗଲେ। ତାଙ୍କର ଆଖି ପଡ଼ିଗଲା, ତାଙ୍କ ପଡ଼ୋଶୀ ଘର ଝରକା ଉପରେ।

ସେକ୍ଟରର ଘରଗୁଡ଼ାକ ତ ସେଇମିତି ତିଆରି ହେଉଛି । ଝରକା ସିଧାକୁ ଝରକା। କବାଟ ସିଧାକୁ କବାଟ । ପୁଣି ପାଇଖାନା ସିଧାକୁ ପାଇଖାନା । ଯଦି ସମସ୍ତଙ୍କ ଝରକାକୁ ଖୋଲି ଦେଇ ଜଣେ ଏ'ମୁଣ୍ଡରୁ ଚାହିଁବ, ପାଞ୍ଚ ଦଶଟା ଘର ଭିତର ଏକାଥରେ ଦେଖି ପାରିବ। ଯେଉଁ ଘର ଭିତରେ ଆଲୁଅ ଜଳୁଥିବ, ସେ ଘର ଜିନିଷ ଗୁଡ଼ାକ ବାହାର ଲୋକକୁ ଜକ ଜକ ଦିଶିଯିବ।

ପଡ଼ୋଶୀ ଘର ଭିତରେ ବି ଲାଇଟ୍ ଜଳୁଥିଲା। ଝରକା ସ୍କ୍ରିନଟା ସେଦିନ କେମିତି କେଜାଣି ଟେକି ହେଇ ଯାଇଥିଲା। ପ୍ରେମାନନ୍ଦବାବୁ ଭଲ ଭାବରେ ଦେଖି ପାରିଲେ, ବିଶ୍ୱାଳବାବୁଙ୍କ ସ୍ତ୍ରୀ ତାଙ୍କ ଡ୍ରେସିଂ ଟେବୁଲ ପାଖରେ ଠିଆ ହେଇ ସଜବାଜ ହେଉଛନ୍ତି। ତାଙ୍କର ପ୍ରସ୍ତୁତି ପର୍ବର ପ୍ରସ୍ତୁତି ଏତେ ଦ୍ରୁତରେ ଥିଲା ଯେ, ତାକୁ ଦେଖିଲେ, ଲାଗୁଥିଲା ସତେ ଯେମିତି ସେ କୌଣସି ଗୋଟାଏ ଜରୁରୀ କାମରେ ସଂଗେ ସଂଗେ ଜୁଆଡ଼େ ବାହାରକୁ ଯିବେ।

ହେଇଥିବ। ଏଇ ସାହି ପଡ଼ିଶାର କାହା ଘରକୁ ଯିବାର ଥିବ। ନହେଲେ ଏତେ ରାତିରେ ସିଏ କାହିଁକି ଏତେ ତରବର ହେଇ ସଜବାଜ ହୁଅନ୍ତେ।

ଛାଡ଼। ପରକଥାରେ ଅଯଥା ମୁଣ୍ଡ ଖେଳେଇ ସମୟ ନଷ୍ଟ କରି ଲାଭ କ'ଣ ?" ଆଖି ଫେରେଇଲେ ପ୍ରେମାନନ୍ଦ ବାବୁ।

କେତେବେଳେ ପତ୍ନୀ ହୀରାମଣି ପଛରେ ଆସି ଠିଆ ହେଇ ଯାଇଛନ୍ତି।

ହଠାତ୍ ପତ୍ନୀଙ୍କର ଆଖି ଦିଇଟା ଏତେ ଶୀଘ୍ର ନାଲି ହେଇଯାଏ, ପୁଣି ଗୋଟାଏ ସାମାନ୍ୟ ଘଟଣାରେ ; ସେହିଦିନ ପ୍ରଥମ କରି ଜାଣିଲେ ପ୍ରେମାନନ୍ଦବାବୁ।

ଗାମୁଛାରେ ମୁହଁ ପୋଛିବା ଆଳରେ ବିଶ୍ୱାଳବାବୁଙ୍କ ଝରକାକୁ ସେ କେତେ ସମୟ ଏକନିଷ୍ଠ ଭାବରେ ଚାହିଁ ରହିଥିଲେ, ଅବଶ୍ୟ ଠିକ୍ ହିସାବ ସେ ରଖି ପାରି ନଥିଲେ। କିନ୍ତୁ ପତ୍ନୀ ତାଙ୍କର ରୋଷେଇ ଘରୁ ଆଇ, ହିସାବ କରି ସାରିଥିଲେ। ଦଶ ମିନିଟ ଚାଲିଗଲାଣି ଖାଲି ବାବୁଙ୍କ ମୁହଁ ପୋଛାରେ।

ହୀରାମଣିଙ୍କର ଆଖି ଦୁଇଟାର ଗତି ଆଉ ରଙ୍ଗରୁ ଜଣା ପଡ଼ି ଯାଉଥିଲା, ସେ ପ୍ରେମାନନ୍ଦ ବାବୁଙ୍କ ଉପରେ ଭୀଷଣ ଭାବରେ କ୍ରୋଧାରୁଢ଼। ଏତେ ବେଳକୁ ସେ କେତେ କ'ଣ କହି ସାରନ୍ତେଣି । ଆଜି କେବଳ ଘରୁ ବାହାରିଲା ବେଳେ ଝଗଡ଼ା ଝାଟି କରିବେ ନାହିଁ ବୋଲି, ପାଟିଟାରେ ଏକ ପ୍ରକାରେ ଚାବି ପକେଇ ରହିଛନ୍ତି।

ସେ ମୁହଁ ପୋଛା ବନ୍ଦ କରି ଡାଇନିଂ ଟେବୁଲକୁ ଚାହିଁଲେ । ଖାଇବା ପାଇଁ ଥାଳି ଓ ପାଣି ଥୁଆ ସରିଲାଣି । ନିଜ ଦୋଷକୁ ନିଜେ ଜାଣିପାରି ସେ ସୁନା ପିଲା ପରି ଖାଇ ବସିଲେ ।

ତାଙ୍କ ମନେ ପଡ଼ିଗଲା, "ଏ'ସେକ୍ଟରକୁ ଆସିଲା ଦିନ ହିଁ ବିଶ୍ୱାଳବାବୁ ଆମ ଘରକୁ ଆସିଥିଲେ । ଅଳ୍ପ ପରିଚୟରେ ସେ ମୋତେ ଭାରି ଆପଣାର ଲାଗିଥିଲେ । ଟ୍ରକ୍‌ରୁ ଜିନିଷ ପତ୍ର ଓହ୍ଲେଇବା ବେଳେ ଯଥା ଶକ୍ତି ସାହାଯ୍ୟ ବି କଲେ । କେଉଁ ଦିଗକୁ ମୁଣ୍ଡ ରଖି ଶୋଇବେ । ସୋଫା ଗୁଡ଼ାକ କେମିତି ସଜେଇ ପକେଇବେ । ଡ୍ରେସିଂ ଟେବୁଲଟା କେଉଁଠି ରହିଲେ, ମୁହଁକୁ ଭଲ ଭାବରେ ଲାଇଟ୍ ପଡ଼ିପାରିବ, ସେ ସବୁ ବିଶ୍ୱାଳବାବୁଙ୍କ ନିର୍ଦ୍ଦେଶରେ ହିଁ ହେଇଥିଲା ।

ସିଏ ତ ପୁଣି ଆମରି ଡିପାର୍ଟମେଣ୍ଟର ଗୋଟିଏ ସେକ୍ସନରେ କାମ କରନ୍ତି । ଏଣେ ଆମର ଏକଦମ୍ ପାଖ ପଡ଼ୋଶୀ । ବିପଦ ଆପଦରେ ଆମକୁ ପରସ୍ପର ଉପରେ ନିର୍ଭରଶୀଳ ହେବାକୁ ପଡ଼ିବ । ସାହାଯ୍ୟ କରିବାରେ ଅସୁବିଧା କିଛି ନଥିଲା ।

ବିଶ୍ୱାଳବାବୁଙ୍କ ସ୍ତ୍ରୀଙ୍କର ବୟସ ବିଶ୍ୱାଳବାବୁଙ୍କ ବୟସ ଠାରୁ ବହୁତ କମ । ତାଙ୍କର ପ୍ରଥମ ସ୍ତ୍ରୀ ଜଣକ ମରିଯିବାର ଦଶ ବର୍ଷ ପରେ ସେ ତାଙ୍କୁ ଦ୍ୱିତୀୟ ବିବାହ କରିଛନ୍ତି । ସେଇଥି ପାଇଁ କେହି କେହି ଭୁଲରେ ତାଙ୍କୁ ବିଶ୍ୱାଳବାବୁଙ୍କର ବଡ଼ ଝିଅ ବୋଲି ଭାବନ୍ତି ।

ବିଶ୍ୱାଳବାବୁ ତାଙ୍କ ପତ୍ନୀଙ୍କ ନାମ ଧରି "ସୋନି" ବୋଲି ଡାକନ୍ତି । ସୋନି ଦେଖିବାକୁ ବେଶ୍ ସୁନ୍ଦରୀ । କଲେଜରେ ପଢୁଥିବା ବେଳେ ସେ ମହିଳା ସଂସଦର ସଂପାଦିକା ଥିଲେ । ପିଲାଟି ବେଳୁ ସେ ସ୍ମାର୍ଟ । ଏବେ ଯଦି କେବେ ବବ୍ କଟ୍ ବୃଟି କାଟି, ସାଲୁଆର ପିନ୍ଧି ରାସ୍ତାରେ ଚାଲି ଯାଆନ୍ତି । ସେକ୍ଟରର ମଧ୍ୟ ବୟସ୍କ ପ୍ରୌଢ଼ ଲୋକମାନେ ବି ତାଙ୍କୁ କିଛି ସମୟ ଅନେଇଁ ରହନ୍ତି ।

ପ୍ରେମାନନ୍ଦବାବୁ ବି ପ୍ରଥମେ ପ୍ରଥମେ ତାକୁ ଅନେଇ ରହୁଥିଲେ । ବିଶ୍ୱାଳବାବୁଙ୍କ ସାଙ୍ଗରେ ଦିନେ ସୋନି ଆସି ତାଙ୍କ ଘରେ ପହଞ୍ଚିଲେ । ପ୍ରଥମ ଭେଟରୁ ହିଁ ତାଙ୍କର ମଧୁର ବ୍ୟବହାର, ପ୍ରେମାନନ୍ଦବାବୁ ତଥା ତାଙ୍କ ପତ୍ନୀଙ୍କୁ ଖୁବ୍ ଭଲ ଲାଗିଥିଲା । ଘରେ ଭଲ ଜିନିଷଟି ହେଲେ, ସୋନି ଆଣି ପ୍ରେମାନନ୍ଦବାବୁଙ୍କ ପତ୍ନୀଙ୍କୁ ଦେଇ କହିଯାଆନ୍ତି - "ଏଇଟାକୁ ଆମ ଭାଇନା ଖାଇବେ । ତମ ପାଇଁ ମୁଁ ଦେଇ ନାହିଁ ।"

ସୋନିଙ୍କ କଥାରେ କେମିତି ଯାଦୁ ଥିବା ପରି ଲାଗେ । ତାଙ୍କ କଥା କେହି କେବେ କାଟି ପାରିବ ନାହିଁ । ମଝିରେ ମଝିରେ ପ୍ରେମାନନ୍ଦବାବୁଙ୍କ ସହିତ ସେ ଥଟ୍ଟା-ମଜାକି ବି କରନ୍ତି । ତାଙ୍କ ଝରକା ଆଉ ପ୍ରେମାନନ୍ଦବାବୁଙ୍କ ଝରକା ସବୁ ବେଳେ ଖୋଲା ରହେ । ତାଙ୍କ ରୋଷେଇ ଘର, ଯାଁ'ଙ୍କ ରୋଷେଇ ଘରକୁ ଦେଖାଯାଏ । ବେଶ୍ ମଜାରେ ଦୁଇ ଜଣ ମହିଳା କଥାବାର୍ତ୍ତା ହୁଅନ୍ତି ।

ସେ ଘରୁ ଥାଇ ସୋନି ବଡ଼ ପାଟିରେ ଭାଇନା, ଭାଇନା ଡାକ ପକାନ୍ତି । ପ୍ରେମାନନ୍ଦବାବୁ ମଧ୍ୟ ଛୁଆଙ୍କ ସାଙ୍ଗରେ ଗେଲ ହେଲା ପରି ତାଙ୍କ ସହିତ ବଡ଼ପାଟିରେ କଥା ହୁଅନ୍ତି । ସେ ଘରୁ ବିଶ୍ୱାଳବାବୁ ଏ'ଘରୁ ପ୍ରେମାନନ୍ଦବାବୁଙ୍କ

ପତ୍ନୀ ସବୁ ଶୁଣନ୍ତି। ହସି ହସି ବେଦମ୍ ହେଇ ଯାଆନ୍ତି। ବେଳେ ବେଳେ ତାଙ୍କ ମଝିରେ ଏ'ମାନଙ୍କୁ ବି ପଦେ ଅଧେ କଥା କହିବାକୁ ପଡ଼େ। ଏମିତି କେତେ ଦିନ ଗଡ଼ି ଚାଲିଲା।

ଦିନେ ସଂଜ ବେଳେ ପ୍ରେମାନନ୍ଦବାବୁ ଅଫିସରୁ ଫେରି ଦେଖିଲେ, ପତ୍ନୀ ହୀରାମଣି ମୁହଁ ଫୁଲେଇ ବସିଛନ୍ତି।

ପ୍ରେମାନନ୍ଦବାବୁଙ୍କୁ ଦେଖି ସେ ଘର ଭିତରକୁ ପଶି ଆସିଲେ। କହି ଚାଲିଲେ, "ଆଜିଠୁ ତମେ ସୋନି ସାଙ୍ଗରେ କଥା ହବନି, କି ତମ ଘର ଝରକା ଖୋଲା ରଖିବ ନାହିଁ। ବୁଝିଲ, ସେ ମାଇକିନାଟା ମୋଟେ ଭଲ ଚରିତ୍ରର ନୁହଁ। ବାହାଘର ଆଗରୁ ତ ଯାହା କରିଥିଲା ଛାଡ଼। ଏବେ ପୁଣି ନୂଆ ନୂଆ ଶିକାର ଖୋଜୁଛି। ମୁଁ ତ ଭାବୁଛି, ଏ'ଘରକୁ ବି ଆମକୁ ବଦଳେଇବାକୁ ପଡ଼ିବ। ବେଳ ଥାଉ ଥାଉ ମାଇକିନାର କାରବାର ଜଣା ପଡ଼ିଗଲା। ନ ହେଲେ ତ ମୋ ସଂସାର ବି ବୁଡ଼ି ଯାଇଥା'ନ୍ତା।"

ହୀରାମଣିଙ୍କ ନନ୍‌ଷ୍ଟପ୍ ଭାଷଣ ଶୁଣି ପ୍ରେମାନନ୍ଦବାବୁଙ୍କ ଅବସ୍ଥା ଖରାପ। ହଠାତ ଏମିତି ସୋନି ନାଆଁରେ ଏତେ ଗୁଡ଼ାଏ ବାଜେ ମନ୍ତବ୍ୟ ଦେବାର ଅର୍ଥ କ'ଣ ? ସେ ମନେ ପକେଇ ଚାଲିଲେ :

- "ସୋନି ସହିତ କେତେବେଳେ ଫିସ୍ ଫିସ୍ ହେଇ ମୁଁ କିଛି ଗୁପ୍ତ କଥା କେବେ କହିଛି କି ? ନାଇଁ ତ !"

- 'ଆମ ଦୁଇ ଜଣଙ୍କର କେବେ ନିର୍ଜନ ସ୍ଥାନରେ ଭେଟ ହେଇଛି କି ? ନାଇଁ ତ !'

- 'ସୋନିର ରୂପରେ ମୁଁ ବିମୋହିତ। ସେ ବହୁତ ସୁନ୍ଦରୀ। ତା'ଭଳି ଭଲ ମହିଳା ମୁଁ ଆଗରୁ କେବେ ଦେଖିନାହିଁ। ଏଭଳି କଥା ନିକଟ ଅତୀତରେ କେବେ ହୀରାମଣିଙ୍କୁ କହି, ତାଙ୍କ ମନରେ ସନ୍ଦେହ ସୃଷ୍ଟି କରିଛି କି ? ନାଇଁ ତ !'

- 'ତେବେ, ବିଶ୍ୱାଳବାବୁ ବୁଢ଼ା ହେଇଗଲେଣି। ତାଙ୍କୁ ସୋନି ଭଳି ଝିଅ ମାନୁ ନାହିଁ। ତା'ପାଇଁ ମୋ ଭଳି ଜଣେ ରସିକିଆ ବର ଦରକାର ଥିଲା। ବିଶ୍ୱାଳବାବୁ ଜଣେ ଅପରାଗ ମଣିଷ। ଏଭଳି କଥା କେବେ ଅଜାଣତରେ ଆଉ କାହା ଆଗରେ କହି ଦେଇଛି କି ? ନାଇଁ ତ !'

- 'ସୋନି କେବେ ଆସି ମୋ ରୂପ, ଗୁଣ ଓ କାର୍ଯ୍ୟ କଳାପକୁ ପ୍ରଶଂସା କରି ହୀରାମଣିଙ୍କୁ କିଛି କହି ଦେଇଛି କି ? ହେଇ ଥାଇପାରେ।'

- 'ନହେଲେ, ଆମ ଦୁଇ ଜଣଙ୍କର ଯିବା ଆସିବା, ଖାଇବା ପିଇବା ଏବଂ କଥାବାର୍ତ୍ତାକୁ ଦେଖି ତୃତୀୟ ଲୋକ କେହି ଈର୍ଷା କରି ଥାଇପାରନ୍ତି।'

- 'ବିଶ୍ୱାଳବାବୁ କାଲି ଆମ ଘରକୁ ଆସିଥିଲେ। ମୁଁ ଗୋଟାଏ ଜରୁରୀ କାମରେ ବଜାରକୁ ପଳେଇ ଯାଇଥିଲି। ସେତିକି ବେଳେ ହୀରାମଣି ଆଉ ବିଶ୍ୱାଳବାବୁ କିଛି କଥା ହେଲେ କି ?'

- 'ଏମିତି ବି ହେଇପାରେ ବିଶ୍ୱାଳବାବୁ ମଜା ମଜାରେ କହି ଦେଇଥିବେ, 'ସୋନି ତ ମୋ ଝିଅ ଭଳିଆ ଦିଶୁଛି। ବିଶ୍ୱାଳବାବୁ ପାଖରେ ସୋନି ବସି ପଡ଼ିଲେ ନା, ସେ ଯୋଡ଼ିଟା ବେଶ୍ ମାନୁଛି।'

ବିଶ୍ୱାଳବାବୁଙ୍କ ତ୍ରୁଟି ଗୁଡ଼ାକ ସିନା ଧଳା ଫରଫର ଦିଶୁଛି। କିନ୍ତୁ ମନ ଭିତରର ରସିକ ପଣିଆ କଥାକୁ କିଏ ବା ଜାଣେ ? ହେଇଥିବ- ବିଶ୍ୱାଳବାବୁଙ୍କ କଥାରୁ ଖିଅ ବାହାର କରି ହୀରାମଣି ସନ୍ଦେହ ଘେର ଭିତରକୁ ଆମ ଦୁଇ ଜଣଙ୍କୁ ନେଇ ଆସିଥିବେ।

ଠିକ୍ ଅଛି। ଏତେ କଥାରୁ କ'ଣ ମିଳିବ ?

ସୋନି ତ ବିଶ୍ୱାଳଙ୍କର ସ୍ତ୍ରୀ। ବିଶ୍ୱାଳବାବୁ ସିନା ମୋ ସାଙ୍ଗରେ କାମ କରୁଛନ୍ତି। ତାଙ୍କ ସ୍ତ୍ରୀଙ୍କ ସହିତ ମୋର ବା କି' କାମ ଯେ ? ସାମାନ୍ୟ କଥାଟାକୁ ବଢ଼ିବାକୁ ନଦେଇ ମୁଁ ହୀରାମଣିଙ୍କ କଥାକୁ ଶିରୋଧାର୍ଯ୍ୟ କରିନେଲି। ତାଙ୍କୁ ଖୁସି କରିବା ପାଇଁ ପ୍ରତିଶ୍ରୁତି ମଧ୍ୟ ଦେଲି - "ଠିକ୍ ଅଛି। ତମରି କଥା ଅନୁସାରେ ଆଜିଠାରୁ ଆଉ ମୁଁ ଝରକା କବାଟ ଖୋଲିବି ନାହିଁ କି, ସୋନି ସାଙ୍ଗରେ କଥା ହେବି ନାହିଁ।"

ଏତେ ସହଜରେ ପ୍ରେମାନନ୍ଦବାବୁ ତାଙ୍କ କଥାକୁ ଗ୍ରହଣ କରି ଯିବାରୁ ହୀରାମଣି ଆଶ୍ଚର୍ଯ୍ୟ ହେଇଗଲେ। ସେ ପଚାରିଲେ, "ତମେ ତ ପଚାରିଲ ନାହିଁ, କାହିଁକି ? କ'ଣ ପାଇଁ ମୁଁ ସୋନି ସାଙ୍ଗରେ କଥା ହେବାକୁ ମନା କଲି ତମକୁ।"

ପ୍ରେମାନନ୍ଦବାବୁ ହାଲୁକା ହସଟିଏ ମୁହଁରେ ରଖି କହିଲେ, "ଆଉ ପଚାରିବି କ'ଣ ? କିଛି ଗୋଟାଏ ଖରାପ କାମ ମୋର ତମେ ଦେଖି ଦେଇଥିବ। କିମ୍ବା ମୋ ଚରିତ୍ର ଉପରେ ତମର କିଛି ଗୋଟାଏ ସନ୍ଦେହ ଆସି ଯାଇଥିବ। ତେଣୁ ତମେ ଏଭଳି କଥା କହିଲ। ତମ ମନରେ ଅଧିକ ସନ୍ଦେହ ସୃଷ୍ଟି କରି ଦାମ୍ପତ୍ୟ ଅଶାନ୍ତିକୁ କାହିଁକି ବଢ଼େଇବି ? ସେଇଥି ପାଇଁ ତମ କଥାକୁ ସିଧା ସଳଖ ମାନି ନେବାକୁ ମୁଁ ଶ୍ରେୟସ୍କର ମନେ କଲି।"

ହୀରାମଣିଙ୍କ ମୁହଁ ଲାଲ ପଡ଼ିଗଲା। ସେ ପ୍ରେମାନନ୍ଦବାବୁଙ୍କ ପାଖକୁ ଲାଗି ଆସି କହିଲେ, "ସେ କଥା ନୁହଁ। ଆଜି ମୁଁ ଅତି ବିଶ୍ୱସ୍ତ ସୂତ୍ରରୁ ଜାଣିଲି - ସୋନି ପାଖକୁ ଦି'ଟା କିଏ ଲୋକ ମଝିରେ ମଝିରେ ଆସନ୍ତି। ହସନ୍ତି-ବସନ୍ତି। ବେଡ଼ରୁମ୍‌କୁ ବି ପଶନ୍ତି। ସେ ଦି'ଜଣ କୁଆଡ଼େ ବାହାଘର ଆଗରୁ ସୋନି ସାଙ୍ଗରେ ନସର ପସର ହଉଥିଲେ। ଭାରି ବଦନାମୀ ହେଇଗଲାରୁ ସୋନିକୁ ଆଉ ସେ ଅଞ୍ଚଳରେ କେହି ବାହା ହେଲେ ନାହିଁ। ବାଛନ୍ଦ ହେଇକି ସିଏ ଥିଲା। ଦୋବେଇ ବୂଢ଼ାବରକୁ ଦେଖି ମଧ୍ୟ ତା' ବାପା ମାଆ ବିଶ୍ୱାଳବାବୁ ହାତରେ ଟେକି ଦେଲେ। ତମେ ଦେଖୁନା, ସୋନି ଭଳି ସୁନ୍ଦରୀ ଝିଅକୁ କ'ଣ ଟୋକା ଅଫିସର ବରଟାଏ ମିଳି ନଥା'ନ୍ତା ?"

ହୀରାମଣି ପ୍ରେମାନନ୍ଦବାବୁଙ୍କ ଠାରୁ କିଛି ଉତ୍ତର ଆଶା କରୁଥିଲେ । କିମ୍ବା 'କେବଳ ସତେ ତ !' କହି ଟିକେ ଗୁମ୍‌ମାରି ରହି ଯାଇଥିଲେ ବି ଚଳିଥା'ନ୍ତା। କିନ୍ତୁ ନିଜ ବିବେକ ଦୃଷ୍ଟିରୁ ସେ ସେତକ କରି ପାରିଲେ ନାହିଁ। ପଚାରି ଦେଲେ, "ତମେ ଏ'ସବୁ ଗୁପ୍ତ ଖବର କେଉଁ ସୂତ୍ରରୁ ପାଇଲ ? ଆଗ ଟିକେ କହିଲ।"

ହୀରାମଣି ମୁରୁକି ହସି କହିଲେ, "କାହିଁକି, ମୋର କ'ଣ ଏଠି କେହି ବିଶ୍ୱସ୍ତ ଲୋକ ନାହାନ୍ତି ନା କ'ଣ ? ଏ'କଲୋନୀରେ କୋଉଠି କ'ଣ ହଉଛି, କିଏ କାହା ପାଖକୁ ଯାଉଛି ? କାହା ଘରେ କ'ଣ ରନ୍ଧା ହଉଛି ? କାହା ଘର କେମିତି ଚଳୁଛି ?

ସବୁ ଖବର ପରା ମୋ ପାଖରେ। ପଚାର, ଗୋଟି ଗୋଟି କରି ସବୁ କହିଯିବି। ତମେ ଯଦି ପ୍ରମାଣ କରିବାକୁ ଚାହଁ, ତେବେ ମୋଠୁଁ ଶୁଣି ସାରି; ତାଙ୍କ ଘରେ ଯାଇ ପଚାରିପାର।"

"ସେ ସବୁ ବାଜେ କଥା ଶୁଣିବାକୁ ମୋର ଇଚ୍ଛା ନାହିଁ। ତମେ ଯାହା ଶୁଣିଛ, ତାକୁ ଯଦି ତମେ ବିଶ୍ୱାସ କରି ସାରିଛ, ସେଥିରେ ମୋର କିଛି କହିବାର ନାହିଁ। ଆମର ବିଶ୍ୱାଳବାବୁଙ୍କ ଘର ସହିତ ଆଜିଠାରୁ ଆଉ କୌଣସି ପ୍ରକାର ସଂପର୍କ ନାହିଁ। ତମେ ସୁବିଧା ଦେଖି ସୋନିକୁ କହିଦବ, ସେ ଆଉ ଆମ ଘରକୁ ଆସିବ ନାହିଁ; କି ମୋ ସାଙ୍ଗରେ କୌଣସି କଥାବାର୍ତ୍ତା କରିବ ନାହିଁ। ବେଶ୍ ହେଲା ତ !"

ପ୍ରେମାନନ୍ଦବାବୁ ଟିକେ ବିରକ୍ତ ହେଲା ପରି ଲାଗୁଥିଲେ। ହୀରାମଣି ତାଙ୍କ ମନକଥା ଜାଣି ପାରି କହିଲେ, "ଜଣେ ନୁହଁ କି ଦୁଇ ଜଣ ନୁହଁ। ଆମେ ତିନି ଜଣ ସ୍ତ୍ରୀଲୋକ ମିଶି ସେ ଟୋକା ଦୁଇଟାଙ୍କୁ କେତେ ଥର ଦେଖି ସାରିଲୁଣି। ଛି-ଛି-ଛି ବାହାଚୋରା ହେଇ ସାରି ପୁଣି ଇଏ ଗୋଟାଏ କି'କାମ ? କଲୋନୀର ଲୋକେ ପୁଣି ପିଲାଛୁଆ ନେଇ ରହିବେ କେମିତି କହିଲ ? ମୁଁ ତ ଆଗରୁ ଭାବିଥିଲି, ସୋନିଟା ଖୁବ୍ ଭଲ ଝିଅ। କିନ୍ତୁ ବୁଡ଼ି ବୁଡ଼ି ସେ ଏମିତି ପାଣି ପିଉଛି ବୋଲି କିଏ ଜାଣିଛି ? ଚାନ୍ଦି ମାଉସୀ କାଲି ସକାଳେ ଆମ ଘରକୁ ଆସିଲେ, ତାଙ୍କୁ ପଚାରି ବୁଝିବ। ସେ ଟୋକି କି କାରବାର କରୁଛି ? ଚାନ୍ଦି ମାଉସୀ ହାତରେ ଆଜି ମୁଁ ଖବର ଦେଇ ଦେଇଛି । ସୋନି ଆଉ ଆମ ଘରକୁ ଆସିବ ନାହିଁ କି, ଆମ ସହିତ କଥା ବି ହେବ ନାହିଁ।"

ପ୍ରେମାନନ୍ଦ ବାବୁ ପୁଣି ବିରକ୍ତ ହେଇ କହିଲେ - "ମୋତେ ଏତେ ସାକ୍ଷୀ ପ୍ରମାଣ ଦରକାର ନାହିଁ। ଚାନ୍ଦି ମାଉସୀ ହେଉ କି ଚନ୍ଦା ମଉସା ହେଉ। ତମେ ତାଙ୍କୁ ପଚାରି ବୁଝ।

- ଆମର ଆଜିଠାରୁ ସୋନି ସହିତ କିଛି ସଂପର୍କ ନାହିଁ। କାମ ଶେଷ।"

- ସେହି ଦିନଠାରୁ ବିଶ୍ୱାଳବାବୁଙ୍କ ପଟ ଝରକା ଗୁଡ଼ାକ ଖୋଲା ଯାଇ ନଥିଲା। ମଝିରେ ମୁଁ ଥରେ ଝରକା ଖୋଲି ଦେଖିଥିଲି। ସୋନି ମଧ୍ୟ ତା'ଝରକା ଗୁଡ଼ିକୁ ବନ୍ଦ କରି ରଖୁଛି। ତେଣୁ ଅଯଥାରେ ଘରଟାକୁ ଅନ୍ଧାର କରିବା କ'ଣ ଦରକାର ? ଆମେ ଗୋଟିଏ ଝରକା ଖୋଲି ପରୀକ୍ଷା କଲୁ। ସୋନି ଆଉ ମୋଟେ ଝରକା ଖୋଲିଲା ନାହିଁ।

- କିଛି ଦିନ ପରେ ସୋନି ବି ଝରକା ଖୋଲିଲା। କିନ୍ତୁ ମୋଟା ସ୍କ୍ରିନ୍‌ଟାକୁ ଝୁଲେଇ ଦେଲା। ଦିନେ ବି ସେ ସ୍କ୍ରିନ ଟେକି ଆମ ଘରକୁ ଚାହିଁଲା ନାହିଁ।

- ଅନେକ ଦିନ ପରେ ଆଜି କେମିତି ସ୍କ୍ରିନଟା ଟେକି ହେଇଯାଇଛି। ଏଣେ ମୁଁ ଝରକା ପାଖକୁ ଯାଇ ଗାମୁଛାରେ ମୁହଁ ପୋଛି ହେଉଥିଲି। ଦୁର୍ଘଟଣାଟାଏ ନୁହେଁ ତ ଆଉ କ'ଣ ?

ଛାଡ଼। ଅଜାଣତରେ ତ ଆଖିଟା ଝରକା ଭିତରକୁ ପଶିଯାଇଛି। କ'ଣ କରାଯିବ ?"

ଘଡ଼ିକୁ ଚାହିଁଲେ ପ୍ରେମାନନ୍ଦବାବୁ ! ଆଉ ମାତ୍ର ଅଧ ଘଣ୍ଟା ଅଛି। ତରବର ହେଇ ସେ ଧାଇଁଲେ, ବସ୍‌ଷ୍ଟାଣ୍ଡକୁ। ଟିକେଟରୁ ବସ ନାମ, ନମ୍ବର ମିଳେଇ

ଚଢ଼ିଗଲେ, 'ଚନ୍ଦ୍ରମଣି' ବସ୍ ଉପରକୁ। ସିଟ୍ ନମ୍ବର ବାର ଖୋଜି ଖୋଜି ପାଇଗଲେ, କିନ୍ତୁ ମୁଣ୍ଡମାଡ଼ି ସିଟ୍‌ରେ ବସିଛନ୍ତି, ଜଣେ ମହିଳା।

ପ୍ରେମାନନ୍ଦବାବୁ ପୁଣି ଥରେ ଟିକେଟ୍ କାଢ଼ି ସିଟ୍ ନମ୍ବର ମିଳେଇ ଦେଖିଲେ। "ଠିକ୍ ଅଛି ତ! ତେବେ କ'ଣ କାଉଣ୍ଟର ବାଲା ବଦମାସୀ କରି ଡବଲ ଟିକେଟ୍ କାଟି ଦେଇଛି ନା'କ'ଣ ? ଏଥର ଯଦି ଗତଥର ଭଳି କରିଥାଏ - ସିଧା ଟିକେଟ୍ କ୍ୟାନ୍‌ସଲ କରି ଅନ୍ୟ କୌଣସି ବସ୍‌ରେ ଯିବି । ନହେଲେ କାଲି 'ତପସ୍ୱିନୀ'ରେ ଚାଲିଯିବି ପଛେ, ଏ'ବସ୍‌ରେ କଦାପି ଯିବି ନାହିଁ।"

- ହଁ, ଭୁଲରେ ସ୍ତ୍ରୀ ଲୋକ ଜଣକ ମୋ ସିଟ୍‌ରେ ବସିଯାଇ ଥାଇ ପାରନ୍ତି। ପଚାରି ଦେଲେ ବରଂ ଭଲ। ମୋ ପାଟିରୁ ବାହାରି ପଡ଼ିଲା - "ମ୍ୟାଡାମ୍! ଆପଣଙ୍କ ସିଟ୍ ନମ୍ବର କେତେ ?"

ମହିଳା ଜଣକ ମୁଣ୍ଡ ଉଠେଇ କହିଲେ - "ଏଗାର।"

- "ଗଛରୁ ପଡ଼ିଗଲା ପରି ମୁଁ ଚମକି ପଡ଼ିଲି।

- ସୋନି ମୋ ପାଖ ସିଟ୍ ଟିକେଟ କାଟି ମୋ ସିଟ୍‌ରେ ଆଗରୁ ବସିଯାଇଛି। ସାରା ରାତି ଦୁହେଁ ଦୁହିଁଙ୍କ ପାଖରେ ବସି କେମିତି ବସ୍ ଯାତ୍ରା କରିବୁ ? ଦୀର୍ଘ ଦିନ ହେଲା ଅପଡ଼, କଥାବାର୍ତ୍ତା ନାହିଁ। ଅଥଚ ଅପଡ଼ର କାରଣ ମୋତେ ଠିକ୍ ଭାବରେ ଜଣା ନାହିଁ। କେବଳ ହୀରାମଣିଙ୍କ କହିବା ଅନୁସାରେ ମୁଁ ତା'ସହିତ କଥାବାର୍ତ୍ତା କରୁ ନାହିଁ। ତଥାପି କାମଚଳା କଥା ହେବାରେ ଅସୁବିଧା କୋଉଠି ?

ମୋ ପାଟିରୁ ବାହାରି ପଡ଼ିଲା - "ଲେଡ଼ିସ୍ ସିଟ୍ ନେଲେନି ?"

"ଲେଡିସ୍ ସିଟ୍ ସବୁ ସରି ଯାଇଥିଲା। ବିଶ୍ୱାଳବାବୁ ଟିକେଟ କରିବାକୁ ଆସିଥିଲେ। ସେ ଜାଣିଲେ ଯେ, ଆପଣ ମଧ୍ୟ ଆଜି ଭୁବନେଶ୍ୱର ଯାଉଛନ୍ତି। ସେ ବୁଦ୍ଧି ବିଚାରି ମୋତେ ନିରାପଦରେ ପହଞ୍ଚାଇବା ଉଦ୍ଦେଶ୍ୟରେ ଆପଣଙ୍କ ପାଖ ସିଟ୍‌ର ଟିକେଟ କାଟି ନେଇଥିଲେ। ମୁଁ ଏକୁଟିଆ ସ୍ତ୍ରୀ ଲୋକ ରାତିରେ କେମିତି ଯାଇଥା'ନ୍ତି କହିଲେ ?"

ସୋନି ସାଙ୍ଗରେ ଆଉ କେବେ କଥା ହେବି ନାହିଁ ବୋଲି ମୁଁ ମୋର ସ୍ତ୍ରୀଙ୍କୁ ପ୍ରତିଶ୍ରୁତି ଦେଇଥିଲି। କିନ୍ତୁ ଆଜି ଏ'ସବୁ କ'ଣ ହେଇଗଲା ? ସୋନି ପ୍ରଶ୍ନର ଉତ୍ତର ନଦେଇ କ'ଣ ଚୁପ୍‌ଚାପ ରହିଯାଇ ପାରିବି ?

ଅଜାଣତରେ ତ ତା'ସହିତ ମୁଁ ଆଗ କଥାବାର୍ତ୍ତା କରିଛି ? ଏତେ ଦିନର ନୀରବତା ପରେ ବି ସୋନି ମୋ ଉପରେ ଯେଉଁ ଗଭୀର ବିଶ୍ୱାସ ରଖିଛି, ତାକୁ କ'ଣ ମୁଁ ପାଦରେ ଆଡ଼େଇ ଦେଇ ପାରିବି ? ନା'।

ମୋ ଆଟାଚିଟାକୁ ଥାକ ଉପରେ ଥୋଇ ସୋନିକୁ ପଚାରି ଦେଲି - "ଆଜି ଏମିତି ଏକୁଟିଆ ଯିବାକୁ କ'ଣ ଜରୁରୀ ଦରକାର ପଡ଼ିଲା ଯେ ?"

"ଭାଇନା ! ଗାଆଁରେ ବାପାଙ୍କ ଦେହ ଭାରି ଅସୁସ୍ଥ। ବିଶ୍ୱାଳବାବୁଙ୍କୁ ଛୁଟି ମିଳୁ ନାହିଁ। ସାନ ଭାଇ ଦି'ଦିନ ତଳେ ଗାଆଁକୁ ଯାଇ ଖବର ଦେଇଛି - 'ବସିବା ଜାଗାରୁ ଉଠି ଆସିବୁ।' ବାପାଙ୍କୁ ଜଗି ରହିବାକୁ ପଡୁଛି। ମୁଁ ଯାଇ ପାରିବି ନାହିଁ, ତୁ ଭୁବନେଶ୍ୱର ପର୍ଯ୍ୟନ୍ତ ଚାଲି ଆ। ମୁଁ ବସଷ୍ଟାଣ୍ଡରୁ ତତେ ନେଇ ଆସିବି। ଆଜି ନିହାତି ବାଧ୍ୟ ହେଇ ଏକୁଟିଆ ବାହାରିଥିଲି। କିନ୍ତୁ ଭଗବାନଙ୍କ ଇଚ୍ଛା ଭିନ୍ନ।

ଆପଣଙ୍କ ସହିତ ଯିବାର ସେ ବ୍ୟବସ୍ଥା କରି ଦେଲେ।"

ଭିତର ପଟ ନିଜ ସିଟ୍‌ରେ ସୋନିକୁ ବସିବାକୁ ଦେଇ ସିଟ୍ ଦୁଇଟାକୁ ପଛକୁ ଠେଲି ସାଇଜ୍ କରିଦେଲେ, ପ୍ରେମାନନ୍ଦବାବୁ। ବସ୍ ଚାଲିଲା।

ଦୁହେଁ ଚୁପ୍‌ଚାପ। ଏତେ ଦିନ ଧରି କେହି କାହା ସହିତ କଥା କାହିଁକି ହେଉ ନଥିଲେ। ଝରକା କାହିଁକି ବନ୍ଦ ଥିଲା ? ଏ'ବିଷୟରେ ଦୁଇ ଜଣ ଯାକ ଜାଣିବାକୁ ବ୍ୟାକୁଳ। କିନ୍ତୁ କେଉଁ ବିଷୟରୁ ଏ'କଥା ଉଠାଯାଇ ପାରିବ. ଦୋଷ କାହାର ? ଯଦି ଜଣେ କେହି ଭୁଲ କଲା, ଅନ୍ୟ ଜଣେ କାହିଁକି କ୍ଷମା କଲେ ନାହିଁ। ମନ ଭିତରେ ଦୁହିଁଙ୍କର ପ୍ରଶ୍ନ ଆନ୍ଦୋଳିତ ହେଉଛି।

ତେବେ ସେ କଥାକୁ କିଏ ଆଗ ପଚାରିବ। ଜଣେ ଜଣକୁ ଅପେକ୍ଷା କରିଥା'ନ୍ତି।

ଛେଣ୍ଡ ଷ୍ଟପେଜ୍ ପାରି ହେଇଗଲାଣି। ଏବେ ଉଦିତ୍‌ନଗର ଆସିବ। ଡ୍ରାଇଭର ବ୍ରେକ୍ କସିଦେଲା। ସମସ୍ତେ ଟିକେ ଝୁଙ୍କି ପଡ଼ିଲେ।

ସୋନି ଚମକି ପଡ଼ିଲା, ତାକୁ ଲାଗିଲା, ଭାଇନା - କିଛି ତାକୁ ପଚାରିଲେ।

ସୋନି କହିଲା - "ମୋତେ କିଛି ପଚାରିଲ କି ଭାଇନା!" ପ୍ରେମାନନ୍ଦ ବାବୁ କହିଲେ - "ନାଇଁ ତ।"

ଉଦିତନଗର ଷ୍ଟପେଜରେ ଅନେକ ସମୟ ବସ୍ ରହିଲା। ଆଠ ଦଶ ଯାତ୍ରୀ ଉଠିଲେ। ଛୋଟ ଛୁଆଟା ଭେଁ କରି କାନ୍ଦି ଉଠିଲା। ସେ ରଡ଼ି ଭିତରେ ପ୍ରେମାନନ୍ଦବାବୁଙ୍କୁ ଲାଗିଲା - ସୋନି ସେଇ କଥାଟା ଧୀରେ କି ପଚାରି ଦେଲା।

ସେ ତରବର କି ସୋନି ମୁହଁ କୁ ଚାହିଁ ପ୍ରଶ୍ନଟିକୁ ଆଉ ଥରେ ଶୁଣିବାକୁ ଇଚ୍ଛା କଲେ ।

"କ'ଣ କହିଲେ ?" ସୋନି ଲାଜେଇ ପଡ଼ିଲା। ବୁଝିଗଲା ଯେ ଭାଇନା ତାଙ୍କୁ ଅନେକ କଥା ପଚାରିବାକୁ ଚାହୁଁଛନ୍ତି।

ସେ ଆଉ ନୀରବ ରହି ପାରିଲା ନାହିଁ । ଆରମ୍ଭ କରିଦେଲା, "ଭାଇନା! ତମେ ଯାହା ପଚାରିବାକୁ ଚାହୁଁଛ, ମୁଁ ସେକଥା ଜାଣେ। ଏମିତି କାହିଁକି ଘଟିଗଲା ? ସେ କଥା କିନ୍ତୁ ତମେ ଜାଣ ନାହିଁ।"

- "କୋଉ କଥା ?"

- "ଏଇ ମୋ ବଦନାମ୍ କଥା।"

- "ଚାନ୍ଦି ମାଉସୀଙ୍କ କପଟ ଜାଲରେ ଭାଉଜ ଛନ୍ଦି ହେଇ ଯାଇଛନ୍ତି ଭାଇନା! ସେ ବୁଢ଼ୀ ମହା ବଦ୍‌ମାସ । ପର ଘର ଭାଙ୍ଗିବାକୁ ସବୁବେଳେ ସେ ଚକ୍ରାନ୍ତ କରୁଥାଏ। ଏ'ଘର ମାଉସୀ, ସେ ଘର ପିଉସୀ ହେଇ ଚଳେ । ଆଗରୁ ଆମ ଘରକୁ ଦିନରେ ପାଞ୍ଚ ଥର ଆସୁଥିଲା । ଥରେ ଚୋରି କରି ନେଉଥିବା ଜିନିଷକୁ ମୁଁ ତା'ହାତରୁ ଛଡ଼େଇ ରଖିଲି ଯେ, ସେହି ଦିନରୁ ମୁଁ ତା'ଆଖିରେ ବିଷ ହେଇ ଯାଇଛି । ମୋ ନାଆଁରେ କେତେ ନା' କେତେ କଥା କହି ମୋର ବଦନାମ କରୁଛି।"

ମୋ ପାଟିରୁ ବାହାରି ପଡ଼ିଲା, "ସେ ଯେଉଁ ଯୁବକ ଦି'ଜଣ ତମ ଘରକୁ ଆସନ୍ତି, ସେମାନେ କିଏ ?"

- "ମୋର ଦୁଇ ଜଣ ସାନ ଭାଇ ସୁନ୍ଦରଗଡ଼ରେ ରହି କଣ୍ଟ୍ରାକ୍ଟରୀ କରନ୍ତି। ମଝିରେ ମଝିରେ ସେମାନେ ମୋତେ ଦେଖା କରିବାକୁ ଆସନ୍ତି । ସେମାନଙ୍କୁ କୋଳେଇ କାଖେଇ ମୁଁ ବଡ଼ କରିଛି। ତାଙ୍କୁ ମୁଁ ମଝିରେ ମଝିରେ ଡକେଇ ପଠାଏ। ବିଶ୍ୱାଳବାବୁ ବାହାରକୁ ଗଲେ, କେହି ଜଣେ ଆସି ଆମ ଘରେ ରହିଯାଏ। ଚାନ୍ଦି ବୁଢ଼ୀ ସବୁ ସତ କଥା ଜାଣେ। କିନ୍ତୁ ଖାଲି ମୋତେ ବଦନାମ କରିବା ପାଇଁ କ'ଣ ବୋଲି କ'ଣ କହି ବୁଲୁଛି।"

- "ଭାଉଜ ଆପଣଙ୍କୁ କ'ଣ କହିଛନ୍ତି, ସେ କଥା ମୁଁ ଜାଣେନା, ତେବେ ମୁଁ ଆପଣଙ୍କୁ ମୋର ବଡ଼ ଭାଇର ଆସନ ଦେଇ ଆସିଛି । ଆପଣ ମୋ ସହିତ କଥା ହୁଅନ୍ତୁ ବା ନ ହୁଅନ୍ତୁ, ଝରକା ଖୋଲା ରଖନ୍ତୁ ବା ନ ରଖନ୍ତୁ, ସେଥିରେ ମୋର କିଛି କହିବାର ନାହିଁ।"

'ସୋନି କଥା ଶୁଣି ମୁଁ ଅତ୍ୟନ୍ତ ଲଜ୍ଜିତ ମନେ କରୁଥିଲି। ନିଜକୁ ନିଜେ ଘୃଣା ବି କରୁଥିଲି। ମୁଁ ସ୍ଥିର କରିନେଲି, ହୀରାମଣି ନିଜେ ଅସଲ କଥାଟା ବୁଝିବା ପର୍ଯ୍ୟନ୍ତ ଆମର କଥାବାର୍ତ୍ତା ବନ୍ଦ ଥାଉ।

ଆମ ଦୁଇ ଜଣଙ୍କର ମନ ତ ପବିତ୍ର। ହୀରାମଣି ଯେଉଁ ଦିନ ନିଜେ କହିବ - "ଆଜି ସୋନିକୁ ଆମେ ଘରକୁ ଡାକି ଆଣିବା, ସେହିଦିନ ମୁଁ ସୋନି ହାତକୁ ଧରି କ୍ଷମା ମାଗି ନେବି, ହୀରାମଣି ପାଇଁ ଆଉ ଚାନ୍ଦି ମାଉଁସୀ ପାଇଁ।

କଟକରେ ଗାଡ଼ି ପହଞ୍ଚିଲା ବେଳକୁ ପ୍ରେମାନନ୍ଦବାବୁଙ୍କର ନିଦ ଭାଙ୍ଗିଗଲା। ସେ ଦେଖିଲେ, ସୋନି ତାଙ୍କ କୋଳରେ ମୁଣ୍ଡ ଦେଇ ଖୁବ୍ ଆରାମରେ ନିଦରେ ଶୋଇ ପଡ଼ିଛି। କାଳେ ହଲଚଲ ହେଲେ, ତା'ର ନିଜ ଭାଙ୍ଗିଯିବ। ତେଣୁ ସେ ଅଣ୍ଟାକୁ ମଧ୍ୟ ସଳଖି ପାରିଲେ ନାହିଁ। ଭୁବନେଶ୍ୱର ବସ୍‌ଷ୍ଟାଣ୍ଡରେ ତାକୁ ଉଠେଇ ଦେଲେ। ସାନ ଭାଇ ସ୍କୁଟରରେ ବସି ସୋନି ଗାଆଁକୁ ଚାଲିଗଲା। ପ୍ରେମାନନ୍ଦବାବୁ ସିମେଣ୍ଟ ଚଉକିରେ ବସି ପଡ଼ି ଆହୁରି କେତେ କ'ଣ ଭାବି ଚାଲିଲେ।

OOO



# ସଂଜୟ ଅନାଥ ଆଶ୍ରମ

ଇଜ୍ଜତ ସିଂଙ୍କ ବାପା ଥିଲେ, ଇଂରେଜ ଅମଳର ଜଣେ ଇଜ୍ଜତଦାର ଲୋକ। ସିଲିଗୁଡ଼ିରୁ ଦାର୍ଜିଲିଂ ପର୍ଯ୍ୟନ୍ତ ଲମ୍ବି ଯାଇଥିବା ପାହାଡ଼ି ରେଳପଥ ନିର୍ମାଣ କାର୍ଯ୍ୟରେ ତାଙ୍କର ଭୂମିକା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କର୍ସିୟାଙ୍ଗ୍ ଟାପୁ ଉପରେ ସାହେବ ମାନେ ଅନେକ ଗୁଡ଼ାଏ ଶୈଳନିବାସ ନିର୍ମାଣ କଲେ। ସେଥିରେ ମଧ୍ୟ ତାଙ୍କର ଯଥେଷ୍ଟ ଅବଦାନ ଥିଲା। ତେଣୁ ସବୁଠୁ ଉପର ଚିମିନି ଟାପୁରେ ଥିବା ସୁରମ୍ୟ ପ୍ରାସାଦଟିକୁ ଜଣେ ସାହେବ ତାଙ୍କୁ ଉପହାର ଦେଇଥିଲେ। ସେ ପ୍ରାସାଦଟି ହେଉଛି - କର୍ସିୟାଙ୍ଗ୍ ସହର ପାଇଁ ଗର୍ବ ଓ ଗୌରବ।

ଇଂରେଜମାନେ ଚାଲିଗଲା ପରେ ଇଜ୍ଜତ ସିଂ କର୍ସିୟାଙ୍ଗ୍‌ର ଜଣେ ନାମଜାଦା ଲୋକ ହିସାବରେ ପରିଚିତ ହେଲେ। ସବୁଠୁ ଧନୀ ଲୋକ ହିସାବରେ ତାଙ୍କର ଖାତିରି ବଢ଼ିଗଲା। ଉଚ୍ଚ ଉଚ୍ଚ ପାହାଡ଼ ଟାପୁ ଉପରେ ଦେଶୀ ସାହେବମାନଙ୍କର ଭିଡ଼ ଜମିଲା। ପର୍ଯ୍ୟଟକ ଓ ପରିଦର୍ଶକଙ୍କ ସଂଖ୍ୟା ଦିନକୁ ଦିନ ବଢ଼ିଲା। ହୋଟେଲ, ଦୋକାନ ଓ ବଜାର ସଂଖ୍ୟା ସାଙ୍ଗକୁ ସରକାରୀ ଦପ୍ତର ମଧ୍ୟ ବହୁ ଗୁଣିତ ହେଇଗଲା।

କେତେ ଜଣ ଖ୍ରୀଷ୍ଟିୟାନ ପାଦ୍ରୀ ବୁଦ୍ଧି ଖଟେଇ କର୍ସିୟାଙ୍ଗ୍‌ରେ ଶିକ୍ଷାକୁ ବ୍ୟବସାୟରେ ପରିଣତ କରି ଦେଲେ। ଅତ୍ୟାଧୁନିକ ସୁଖ-ସୁବିଧା ସହିତ ଇଂରାଜୀ ମାଧ୍ୟମର ବିଦ୍ୟାଳୟମାନ ଖୋଲି ଚାଲିଲେ। କଲିକତାର ଧନୀକ ଏବଂ ସୌଖିନ ଲୋକମାନଙ୍କ ସହିତ ବଙ୍ଗଳାଦେଶ ତଥା ଭୁଟାନ୍‌ର ଅସଂଖ୍ୟ ଛାତ୍ର ଛାତ୍ରୀ ଆସି ଆବାସିକ ବିଦ୍ୟାଳୟରେ ରହି ଅଧ୍ୟୟନ କଲେ। ବର୍ଷକୁ ଲକ୍ଷ ଲକ୍ଷ ଟଙ୍କା ଦେଇ ପାରୁଥିବା ଧନୀ ବ୍ୟବସାୟୀଙ୍କ ପିଲାମାନେ ଆସି ଭିଡ଼ ଜମେଇଲେ। ତେଣୁ ଲୋକସଂଖ୍ୟା କର୍ସିୟାଙ୍ଗ୍‌ରେ ହୁ-ହୁ ହେଇ ବଢ଼ି ଚାଲିଲା।

ଇଜ୍ଜତ ସିଂ ଯେଉଁ ପର୍ବତ ଟାପୁ ଗୁଡ଼ିକୁ ହାତରେ ରଖିଥିଲେ, ପରେ ସେଗୁଡ଼ିକୁ ବିକ୍ରୀ କରି କୋଟି କୋଟି ଟଙ୍କାର ମାଲିକ ହେଇଥିଲେ। ବୃଦ୍ଧ ଇଜ୍ଜତ ସିଂଙ୍କ ଅନ୍ତେ ତାଙ୍କ ପୁଅ ମହିନ୍ଦର ସିଂ ସମସ୍ତ ସଂପତ୍ତିର ଉତ୍ତରାଧିକାରୀ ହେଇଗଲେ। ବିନା ପରିଶ୍ରମରେ ଏତେ ଗୁଡ଼ାଏ ସଂପତ୍ତିର ମାଲିକ ହେଇଥିବାରୁ ମହିନ୍ଦରଙ୍କର ଅଯଥା

ବଦଖର୍ଚ୍ଚ ବହୁତ ବଢ଼ି ଯାଇଥିଲା ସତ ; କିନ୍ତୁ ତାଙ୍କର ଅର୍ଥ କୌଣସି ମହତ କାର୍ଯ୍ୟରେ ଲାଗି ପାରୁ ନଥିଲା । ଦାନ, ଧର୍ମ କିମ୍ବା ଲୋକ ହିତକର କାର୍ଯ୍ୟ ପାଇଁ କେହି କେବେ ତାଙ୍କ ଠାରୁ କିଛି ନେଇ ପାରନ୍ତି ନାହିଁ । ତୋଷାମଦକାରୀ, ଠକ, ମଦ କଂପାନୀ ଏବଂ ଚୋରମାନଙ୍କ ଦ୍ୱାରା ତାଙ୍କର ଅର୍ଥ ଶ୍ରାଦ୍ଧ ହୁଏ ।

ତୃତୀୟ ପୀଢ଼ିର ମଣିଷ ମହିନ୍ଦର ସିଂଙ୍କର ପୁଅ ସଂଜୟ ଜେଜେଙ୍କ ଗୁଣସୂତ୍ର ନେଇ ଜନ୍ମ ଗ୍ରହଣ କରିଥିଲେ । ପିଲାଟି ବେଳୁ ବେଶ ପରୋପକାରୀ ଜଣା ପଡୁଥିଲା । ଜଣେ ମେଧାବୀ ଛାତ୍ର ହିସାବରେ ଡାକ୍ତରୀ ଶିକ୍ଷା ମଧ୍ୟ ତାଙ୍କର ଶେଷ ହେଇଗଲା ।

ଏଥର ବାପା ତାଙ୍କୁ ପରାମର୍ଶ ଦେଲେ, "ତୋର ଚାକିରି କରିବା ଦରକାର ନାହିଁ । ତୁ କେବଳ ଆମର ସଂପତ୍ତିର ରକ୍ଷଣାବେକ୍ଷଣ ଦାୟିତ୍ୱ ବୁଝାବୁଝି କର । ମୋର ଯାହା ବ୍ୟାଙ୍କ୍ ବାଲାନ୍ସ ରହିଛି, ତା'ର ସୁଧକୁ ଖର୍ଚ୍ଚ କଲେ ବି, ସାରା ଜୀବନରେ ତାକୁ ଶେଷ କରି ପାରିବୁ ନାହିଁ ।"

କିନ୍ତୁ ସଂଜୟ ଥିଲେ, ଭିନ୍ନ ଉପାଦାନରେ ଗଢ଼ା ମଣିଷ । ସେ ଦେଶର ବିଭିନ୍ନ ସ୍ଥାନ ଭ୍ରମଣ କରୁ କରୁ ପଣ୍ଡିଚେରୀ ଆଶ୍ରମରେ ପହଞ୍ଚିଗଲେ । ସେଠାକାର ପରିବେଶ ଓ ଆଧ୍ୟାତ୍ମିକ କାର୍ଯ୍ୟକଳାପ ତାଙ୍କୁ ଅତ୍ୟନ୍ତ ଭଲ ଲାଗିଲା । ସେ ମନପ୍ରାଣ ଦେଇ ସେ ସ୍ଥାନର ମହତ୍ୱକୁ ବୁଝିବାରେ ଲାଗିଲେ । ଆଠ ଦିନ, ପନ୍ଦର ଦିନ ପୁଣି ମାସେ ରହୁ ରହୁ ସେ ବର୍ଷଟିଏ ଆଶ୍ରମରେ ରହିଗଲେ ।

ବାପା ମାଆଙ୍କୁ ସେ ନିଜର ଅବସ୍ଥିତି ଏବଂ ଆନନ୍ଦପ୍ରାପ୍ତି ସଂପର୍କରେ ନିୟମିତ ସୂଚନା ଦେଉଥିଲେ ।

ହଠାତ ଦିନେ ସେ ମନଖୋଲି ଚିଠିରେ ଲେଖି ଦେଲେ, "ମୋର କୌଣସି ଅର୍ଥ, ଧନ-ସଂପତ୍ତି, କୋଠାବାଡ଼ି ଏବଂ ଅନ୍ୟ ପଦାର୍ଥ ପ୍ରତି ମୋହ ଆସୁ ନାହିଁ । ମୁଁ ଏଠାରେ ବର୍ତ୍ତମାନ ଶ୍ରେଷ୍ଠ ସୁଖ ଲାଭ କରୁଛି । ତେଣୁ ମୁଁ ଏଠାରେ ଏକ ଆଧ୍ୟାତ୍ମିକ ଜୀବନ ବିତେଇବାକୁ ଚାହୁଁଛି ।"

ବାପା ମାଆ ଦୁହେଁ ଏକମାତ୍ର ପୁଅ ସଂଜୟର ଏଭଳି କାର୍ଯ୍ୟକଳାପରେ ବ୍ୟସ୍ତ ହେଇ ପଡ଼ିଲେ । ପୁଅକୁ ଫେରାଇ ଆଣି, ବାହା କରେଇ ଦେବାର ଯୋଜନା କଲେ ।

ହଠାତ ଦିନେ ସେମାନେ ପଣ୍ଡିଚେରୀ ଆଶ୍ରମରେ ପହଞ୍ଚି ସଂଜୟକୁ ଦେଖି ଚିହ୍ନି ପାରିଲେ ନାହିଁ । ମୁହଁରେ ଦାଢ଼ୀ, ଦେହରେ ଛୋଟ ଧୋତି ଦୁଇ ଖଣ୍ଡ । ଖାଲି ପାଦ, ଭଗ୍ନ ସ୍ୱାସ୍ଥ୍ୟ । ଏ'ସବୁ ଦେଖି ସଂଜୟଙ୍କର ବାପା ମାଆଙ୍କର ଧୈର୍ଯ୍ୟ ରହିଲା ନାହିଁ । କର୍ସିୟାଙ୍ଗକୁ ଫେରାଇ ଆଣିବାକୁ ସମସ୍ତ ପ୍ରକାର ଚେଷ୍ଟା କଲେ । ମାଆ ବହୁତ କାନ୍ଦିଲେ । ସୁନ୍ଦରୀ ଶିକ୍ଷିତା ଝିଅଟିଏ ସେମାନେ ତା'ପାଇଁ ଦେଖିଛନ୍ତି ବୋଲି କହିଲେ । କିନ୍ତୁ କୌଣସି ପ୍ରକାର ଔଷଧ ତାଙ୍କୁ କାଟୁ କଲା ନାହିଁ ।

ଅସହାୟ ଅବସ୍ଥାରେ ବାପା-ମାଆ ଦୁହେଁ କର୍ସିୟାଙ୍ଗ୍ ଫେରି ଆସିଲେ । ବନ୍ଧୁ ବାନ୍ଧବ ସାଙ୍ଗ ସାଥୀମାନଙ୍କ ମାଧ୍ୟମରେ ସେମାନେ ପୁଅ ସଂଜୟ ଉପରେ ଚାପ ପକେଇଲେ । ମଝିରେ ମଝିରେ ବାପା କିମ୍ବା ମାଆଙ୍କର ଦେହ ଅସୁସ୍ଥ କଥା ଜଣେଇ ଚିଠି ଦେଲେ । ଜମିବାଡ଼ି କିଣା ବିକା ନେଇ ତା'ର ଉପସ୍ଥିତି ଅତ୍ୟନ୍ତ ଜରୁରୀ ବୋଲି ଖବର ଦେଇ ପଠେଇଲେ । ପଣ୍ଡିଚେରୀ ଆଶ୍ରମର ଅନ୍ୟ ବରିଷ୍ଠ

କର୍ମଚାରୀ ଓ ସାଧୁ ଗବେଷକମାନଙ୍କ ନିକଟକୁ ବହୁ ଆବେଦନ ନିବେଦନ କଲେ। କିନ୍ତୁ କୌଣସି ସୁଫଳ ତାଙ୍କୁ ମିଳିଲା ନାହିଁ।

ସଂଜୟ ତାଙ୍କର ଶେଷ ନିଷ୍ପତ୍ତି ଜଣେଇ ଦେଲେ। ପଣ୍ଡିଚେରୀ ଆଶ୍ରମ ଛାଡ଼ି ସେ ଆଉ କୌଣସି ସ୍ଥାନକୁ ଯିବେ ନାହିଁ। ଏହା ପରେ ବି ତାଙ୍କର ବାପା ମାଆ ଅନେକ ଚେଷ୍ଟା କରିଥିଲେ । ତାଙ୍କର ଗଭୀର ବିଶ୍ୱାସ ଥିଲା, ପୁଅ ଦିନେ,ନା'ଦିନେ ଘରକୁ ଫେରି ଆସିବ। ଏ'ଅକଳନ ସଂପତ୍ତିର ମାଲିକ ହେବ। ଗୁଣି ଗାରେଡ଼ି, ତନ୍ତ୍ରମନ୍ତ୍ର ମଧ୍ୟ ସବୁ ବିଫଳ ହେଲା। ତେଣେ ସଂଜୟ ସିଂ ପଣ୍ଡିଚେରୀରେ ଥାଇ ଜଣେ ନିଷ୍ଠାପର ସାଧୁ ପାଲଟି ଗଲେ। ଘର ସହିତ କୌଣସି ସଂପର୍କ ରଖିଲେ ନାହିଁ।

ତଥାପି ସଂଜୟର ମାଆ ପୁଅର ଫେରନ୍ତା ବାଟକୁ ଚାହିଁ ବସିଥା'ନ୍ତି। ସତକୁ ସତ ହଠାତ ଦିନେ ସଂଜୟ ଆସି କର୍ସିୟାଙ୍ଗ୍‌ରେ ପହଞ୍ଚିଲେ। ବାପା ମାଆଙ୍କୁ ଦେଖା କରି ପରାମର୍ଶ ଦେଇ ଗଲେ - "ମୁଁ ତମର ଏକମାତ୍ର ପୁଅ ଥିଲି। ତମେ ମୋ କଥା ମାନିଲେ ତୁମେ ଦି'ଜଣ କର୍ସିୟାଙ୍ଗ୍‌ବାସୀଙ୍କର ବାପା-ମାଆ ହେଇଯାଇ ପାରିବ।

- ଅସଂଖ୍ୟ ଅନାଥ ଶିଶୁ ଆମ ଏ'ଅଞ୍ଚଳରେ ଅସହାୟ ଅବସ୍ଥାରେ ଜୀବନ କାଟୁଛନ୍ତି। ଅଭାବ ଓ ଦୁଃଖର ଅନ୍ଧକାର ଭିତରେ ତାଙ୍କର ଶୈଶବର ମୃତ୍ୟୁ ଘଟୁଛି। ତମେ ଯଦି ଏ' ପ୍ରାସାଦଟିକୁ ଗୋଟାଏ ଅନାଥ ଆଶ୍ରମ କରି ଦେଇପାରିବ, ତେବେ ମୁଁ ସବୁଠୁ ବେଶି ଖୁସି ହେବି। ସେହି ଅନାଥ ପିଲାମାନେ ହିଁ ତମ ଦି'ଜଣଙ୍କୁ ଅଧିକ ସୁଖ ଦେଇପାରିବେ।

ବାପା ମାଆ ଦୁହେଁ, ସଂଜୟ ମୁହଁକୁ ବଲବଲ କରି ଚାହିଁଥିଲେ। ଭାବୁଥିଲେ- ଏତେ ସଂପତ୍ତି, ବିଶାଳ ପ୍ରାସାଦ ଏବଂ ବ୍ୟାଙ୍କ୍ ବାଲାନ୍ସ ପ୍ରତି ପୁଅର ତିଳେ ମାତ୍ର ମୋହ ନାହିଁ। କ'ଣ ଆଉ କରାଯାଇ ପାରିବ ?

ସେଦିନ ସଂଜୟ ବାପା-ମାଆଙ୍କ ଠାରୁ ବିଦାୟ ନେଇ ପୁଣି ପଣ୍ଡିଚେରୀ ଚାଲିଗଲେ। ଏଥର ବାପା-ମାଆ ବୁଝିଗଲେ, ସଂଜୟ ଆଉ ଅମଳ ହେଇ ପାରିବ ନାହିଁ।

ଏହା ମଧ୍ୟରେ ଅନେକ ଦିନ ବିତିଗଲାଣି। ସଂଜୟଙ୍କର ବାପା ମାଆ ପୁଅ ଚିନ୍ତାରେ ଖୁବ୍ ଦୁର୍ବଳ ହେଇଗଲେଣି। ସେମାନଙ୍କର ଏତେ ସଂପତ୍ତିକୁ କାହା ହାତରେ କେମିତି ଟେକି ଦେବେ। ବିପଦ ଆପଦ ଦୁଃଖ ସୁଖରେ ତାଙ୍କୁ କିଏ ସାହା ଭରସା ହେବ। ଏତିକି ଥିଲା - ସବୁବେଳ ପାଇଁ ଚିନ୍ତା। ଏଣେ ସଂପତ୍ତି ପ୍ରତି ମୋହ ତାଙ୍କର ତୁଟୁ ନଥାଏ।

ଦିନେ ବୁଢ଼ାବୁଢ଼ୀ ମିଶି ନିଷ୍ପତ୍ତି ନେଲେ, ପାଳିତା ଝିଅଟିଏ ଆଣି ରଖିବେ। ବନ୍ଧୁ ବାନ୍ଧବ ଭିତରୁ ହେଲେ ତ ସବୁଠୁ ଭଲ।

କିନ୍ତୁ ସେମାନେ ତ କେଉଁ ଯୁଗରୁ ନିଜ ଅଞ୍ଚଳ ଛାଡ଼ି ସାରିଲେଣି, କାହାରି ସହିତ ସେଭଳି ସଂପର୍କ ମଧ୍ୟ ଭଲ ନାହିଁ। କିଏ ତାଙ୍କୁ ନିଜର ଝିଅଟିକୁ ଟେକି ଦେବ। ଯଦି କେହି ଝିଅଟି ଦିଏ, ସିଏ ଯେ ଅସୁବିଧା ସମୟରେ ଆମକୁ ସାହା-ଭରସା ହେବ କି ନାହିଁ କିଏ କହି ପାରିବ ?

ସଂଜୟକୁ ଫେରାଇ ଆଣିବା ପାଇଁ ସେମାନେ ଶେଷ ଥର ଚେଷ୍ଟା ଚଳେଇଲେ। କିନ୍ତୁ ଏଥର ସଂଜୟ ତାଙ୍କୁ ସାକ୍ଷାତ କରିବାକୁ ମନା କରିଦେଲେ।

ବରଂ ଖବର ଦେଇ ପଠାଇଲେ, ଆପଣ ଯଦି ପାରନ୍ତି - 'କୌଣସି ଅନାଥ ପିଲାଟିକୁ ନେଇ ଘରେ ରଖି ତାକୁ ପୁତ୍ର କିମ୍ବା କନ୍ୟାର ମର୍ଯ୍ୟାଦା ଦିଅନ୍ତୁ।'

ବାପା-ମାଆ ଦୁହେଁ ଖାଲି ହାତରେ ପଣ୍ଡିଚେରୀରୁ ଫେରୁଥା'ନ୍ତି। ଷ୍ଟେସନରେ ଦେଖିଲେ, ସାତ ଆଠ ବର୍ଷର ଝିଅଟିଏ ହାତପାତି କିଛି ସାହାଯ୍ୟ ଭିକ୍ଷା କରୁଛି। ତାକୁ ପାଖକୁ ଡାକି ବୁଝିଲେ, ସେ ଝିଅଟିର ବାପା ମାଆ କେହି ନାହାନ୍ତି। ମାଗିଯାଚି ସେ ବଞ୍ଚୁଛି। ଘରେ କାମ କରି ରହିବାକୁ ମଧ୍ୟ ପ୍ରସ୍ତୁତ ଅଛି। ସେଦିନ ସେମାନେ ତା'ପାଇଁ ମଧ୍ୟ ଟିକେଟ ଖଣ୍ଡିଏ କାଟି ଦେଲେ। ନୂଆ ଫ୍ରକ୍ ପ୍ୟାଣ୍ଟ କିଣି ତାକୁ ପିନ୍ଧେଇ ଦେଲେ। ସ୍ଥାନୀୟ ପୋଲିସରେ ସମସ୍ତ ପ୍ରକାର ସୂଚନା ଦେଇ ସେ ଝିଅଟିକୁ ସାଙ୍ଗରେ କର୍ସିୟାଙ୍ଗ୍ ନେଇ ଆସିଲେ।

କର୍ସିୟାଙ୍ଗ୍‌ର ସୁନ୍ଦର ପରିବେଶ। ଶୀତଳ ଜଳବାୟୁ ଏବଂ ସମସ୍ତଙ୍କର କୋମଳ ବ୍ୟବହାରରେ ଝିଅଟିର କାର୍ଯ୍ୟକଳାପ ମଧ୍ୟ ପରିବର୍ତ୍ତନ ହେବାରେ ଲାଗିଲା। ସେ ସଂଜୟର ବାପା ମାଆଙ୍କୁ ମଧ୍ୟ ବାପା ମାଆ ବୋଲି ଡାକିଲା। ଧୀରେ ଧୀରେ ଝିଅଟି ଉପରେ ବାପା-ମାଆ ଦୁହେଁ ନିର୍ଭରଶୀଳ ହେବାକୁ ଲାଗିଲେ।

ଝିଅଟାର ଡାକ ନାଆଁଟା ଶୁଣିବାକୁ ଭଲ ନଥିଲା। ତେଣୁ ସଂଜୟର ମାଆ ତାକୁ ପାର୍ବତୀ ନାଆଁ ଦେଇ ଡାକୁଥିଲେ। କିଛି ଦିନ ପରେ ପାର୍ବତୀ ସ୍କୁଲରେ ପାଠ ବି ପଢ଼ିଲା। ବୟସ ଟିକେ ଅଧିକ ହେଇ ଯାଇଥିଲା ସିନା, କିନ୍ତୁ ସେ ଖୁବ୍ ଭଲ ମନେ ରଖିପାରୁ ଥିଲା।

ଏବେ ଆଖପାଖ ଲୋକେ ଜାଣିଗଲେ, ଏ'ଝିଅଟି ହେଉଛି - ସଂଜୟର ଭଉଣୀ। ଦିନ ଗଡ଼ି ଚାଲିବା ସଂଗେ ସଂଗେ ଘର ଭିତରର ସବୁ ଜିନିଷ ଉପରେ ତା'ର ଅଧିକାର ବଢ଼ି ଚାଲିଲା।

ପାର୍ବତୀ ବୁଝିଗଲା, ଏଇମାନେ ହିଁ ତା'ର ହଜି ଯାଇଥିବା ବାପା ମାଆ। ଅନେକ କଷ୍ଟରେ ଅନେକ ଦିନ ପରେ ସେ ତା'ର ବାପା ମାଆଙ୍କୁ ଫେରି ପାଇଛି।

ଏହା ଭିତରେ ସଂଜୟକୁ ତା'ର ବାପା ମାଆ ଭୁଲି ଆସିଲେଣି । ତା'ର ଆସନକୁ ପାର୍ବତୀ ମାଡ଼ି ବସିଲାଣି। ବୟସ ବଢ଼ିବା ସଂଗେ ସଂଗେ ତାଙ୍କର ଦାୟିତ୍ୱ ମଧ୍ୟ ବଢ଼ି ଗଲାଣି। ପାର୍ବତୀ ପରୀକ୍ଷା ଦେଇ ମେଟ୍ରିକ୍ ପାସ୍ କରିଗଲା। ଏ'ଖବର ଶୁଣି ତା'ର ବାପା ମାଆ ବହୁତ ଖୁସି ହେଇଗଲେ।

ବଢ଼ିଲା ଝିଅଟିକୁ କେତେ ଦିନ ବା ଏମିତି ରଖି ପାରିବେ। ଦିନେ ବାପା ମାଆ ଦୁହେଁ ପାର୍ବତୀକୁ ଶୁଣେଇ କହି ଦେଲେ - "ତୁ ଆମର ପୁଅ ଝିଅ ସବୁ କିଛି। ଏ'ସବୁ ସଂପତ୍ତିର ଉତ୍ତରାଧିକାରୀ ତୁ। କିନ୍ତୁ ଆଜିକାଲିର ଯୁଗ ଯେମିତି ହେଲାଣି। ଆମେ ଭାବୁଛୁ, ଏହି ଅଚଳାଚଳ ସଂପତ୍ତି ହିଁ ତୋ'ପାଇଁ ଦିନେ ବିପଦ ସୃଷ୍ଟି କରିପାରେ। ତେଣୁ ଆମେ ଠିକ୍ କରିଛୁ, କୌଣସି ଯୋଗ୍ୟ ପିଲାଟିଏ ପାଇଲେ; ଆମେ ଆଣି ତାକୁ ଘର ଜୋଇଁଆ କରି ରଖିବୁ।"

ପାର୍ବତୀ ତ କେଉଁ ଦିନରୁ ବାପା ମାଆଙ୍କର ବାଧ୍ୟ ଝିଅ ହେଇ ସାରିଥିଲା। ସେ ଆଗପଛ ବିଚାର ନକରି, ତାଙ୍କ ପ୍ରସ୍ତାବରେ ରାଜି ହେଇଗଲା।

ଇଜ୍ଜତ ସିଂଙ୍କ ପରିବାରକୁ ଝିଅଟିଏ ନେବାକୁ କିଏ ବା ନ ଚାହିଁବ! ଧନଜନ ଗୋପ ଲକ୍ଷ୍ମୀ, ଯାନି ଯୌତୁକର ଅଭାବ ନାହିଁ। ଅନେକ ଧନୀ ଶ୍ରେଣୀର ବ୍ୟବସାୟୀ

ଆସି ପାର୍ବତୀକୁ ବୋହୂ କରି ନେବାକୁ ଆଗ୍ରହୀ ହେଲେ। ସମସ୍ତେ ଯେତେବେଳେ ଜାଣିଗଲେ ଯେ, ସଂଜୟ ଆଉ ଫେରିବ ନାହିଁ। ସବୁ ସଂପତ୍ତିର ଉତ୍ତରାଧିକାରୀ ହେଉଛି - ପାର୍ବତୀ। ଘରେ ବୁଢ଼ାବୁଢ଼ୀ ଦି'ଜଣ ସବୁ କିଛି ପାର୍ବତୀ ନାଆଁରେ ଉଇଲ୍ କରି ଦେଇଛନ୍ତି। ଆହୁରି ଅଧିକରୁ ଅଧିକ ପ୍ରସ୍ତାବମାନ ଆସି ପହଞ୍ଚିବାରେ ଲାଗିଲା।

ଦିନକୁ ଦିନ ସଂଜୟର ବାପାଙ୍କ ଅବସ୍ଥା ଖରାପ ହେବାକୁ ଲାଗିଲାଣି। ସେ ଆଉ ଉଠାବସା କରି ପାରୁ ନାହାନ୍ତି। ଘର ଭିତରେ ଏକମାତ୍ର ପାର୍ବତୀ ହିଁ ଭରସା। ତା'ର ସେବା ଆଉ ଶ୍ରଦ୍ଧାରେ ସେ ଏତେ ଦିନ ବଞ୍ଚି ରହିଛନ୍ତି। ପାର୍ବତୀ ଭବିଷ୍ୟତ ଚିନ୍ତା ଏବେ ତା'ର ମାଆ ହିଁ କରୁଛନ୍ତି ।

ମାଆ ଦିନେ ସବୁ ଦିଗରୁ ସବୁ ପ୍ରସ୍ତାବକୁ ବିଚାର କରି ଦେଖିଲେ। ଯେତେ ଗୁଡ଼ାଏ ପ୍ରସ୍ତାବ ପାର୍ବତୀ ପାଇଁ ଆସୁଛି, ସେସବୁ କେବଳ ଧନ ସଂପତ୍ତି ପାଇଁ। ପାର୍ବତୀ ଜଣେ ଅନାଥ ବାଳିକା। ଶିକ୍ଷାଗତ ଯୋଗ୍ୟତା ସେତେ ବେଶି ନୁହେଁ। ରୂପ ନାହିଁ କି ଗୁଣ ନାହିଁ। ବୟସ ମଧ୍ୟ ହେଇଗଲାଣି। ତଥାପି ଉଚ୍ଚ ଶ୍ରେଣୀର ଧନୀଲୋକମାନେ ନିଜ ପୁଅ ପାଇଁ ପ୍ରସ୍ତାବ ପଠେଇ ଚାଲିଛନ୍ତି। ସେ ପାର୍ବତୀକୁ ପାଖକୁ ଡାକି ମନର କଥା କହି ଦେଲେ। ସମସ୍ତ ପ୍ରସ୍ତାବକୁ କାଟି ନାସ୍ତିବାଣୀ ଶୁଣେଇ ଦେଲେ।

ଦିନେ ସଂଜୟର ମାମୁ ତାଙ୍କ ଘରକୁ ଆସିଥା'ନ୍ତି। ସେ ବଡ଼ ଭଉଣୀର ମନ କଥା ଶୁଣିଲେ। ସେ ପ୍ରସ୍ତାବ ଦେଲେ, ଆଉ ଜଣେ ଅନାଥ ପିଲାକୁ ଆଣି ପାର୍ବତୀ ସହିତ ବିବାହ କରିଦେଲେ ଭଲ ହେବ । କିନ୍ତୁ ସେ ପିଲା ସଂସ୍କାରଯୁକ୍ତ ହେଇଥିବା ଦରକାର।

ଅନାଥ ଆଶ୍ରମରେ ଲାଳିତ ପାଳିତ ହୋଇଥିବା ପ୍ରଦ୍ୟୁମ୍ନ ନାମକ ଯୁବକଟିର କଥା ତାଙ୍କର ମନେ ପଡ଼ିଗଲା। ସେ ଏବେ କଠିନ ପରିଶ୍ରମ କରି ଛୋଟ କୁଟୀର ଶିଳ୍ପ କରି ଚଳୁଛି। କେତେ ଜଣ ଅନାଥ ପିଲାଙ୍କୁ ମଧ୍ୟ ନିଜ ଶିଳ୍ପରେ ନିଯୁକ୍ତି ଦେଇଛି। ଖୁବ୍ ଭଲ ପିଲାଟିଏ।

ଦିନେ ସଂଜୟର ମାମୁ ତାକୁ ଡାକି ଆଣି ପାର୍ବତୀକୁ ଦେଖାଇ ଦେଲେ। ବିନା ଆଡ଼ମ୍ବରରେ ବାହା ଘର ବି ହେଇଗଲା। ସେମାନେ ଆସି ସଂଜୟର ପ୍ରାସାଦରେ ପୁଅ ବୋହୂ ହେଇ ରହିଲେ।

ଅଳ୍ପ ଦିନ ପରେ ପ୍ରଦ୍ୟୁମ୍ନର ପରୋପକାର, ଅନ୍ୟକୁ ସାହାଯ୍ୟ କରିବା ଗୁଣ ଦ୍ୱାରା ସଂଜୟର ବାପା-ମାଆ ମଧ୍ୟ ପ୍ରଭାବିତ ହେଲେ। ସଂଜୟ କଥାକୁ ସ୍ମରଣ କରି ଚାରି ଜଣ ମିଶି ନିଷ୍ପତ୍ତି ନେଲେ, ଏ'ସବୁ ସଂପତ୍ତିକୁ ନେଇ ଗୋଟାଏ ଅନାଥ ଆଶ୍ରମ କରିବା। ଯେଉଁ ପିଲା ଅନାଥ ଆଶ୍ରମରୁ ବଡ଼ ହେଇ ବାହାରିବେ, ଏଇଠି ତାଙ୍କ ପାଇଁ କର୍ମ ସଂସ୍ଥାନ ବ୍ୟବସ୍ଥା ବି ହେଇ ପାରିବ।

ପ୍ରଦ୍ୟୁମ୍ନ ବୁଝେଇ ଦେଲା - "ଆପଣ ଗୋଟିଏ ପୁଅ ସଂଜୟର ବାପା ମାଆ ହେଇଥିଲେ। ଏବେ ଆମ ଦୁଇ ଜଣଙ୍କୁ ଲଗେଇ ଆପଣ ତିନି ଜଣଙ୍କର ବାପା-ମାଆ ହେଇଛନ୍ତି। ମୁଁ ଚାହେଁ, ଆପଣମାନେ ଲକ୍ଷେ ସନ୍ତାନର ବାପା-ମାଆ ହୁଅନ୍ତୁ। ଏ'ସଂପତ୍ତିକୁ ଆମେ ତ କଷ୍ଟ କରି ଅର୍ଜନ କରିନାହୁଁ। ତେଣୁ ଆମେ ଏହାର ମାଲିକ ହେବାର ଅଧିକାର ପାଇ ନାହୁଁ। ଏ'ପ୍ରାସାଦ ହେଉ ଏକ ଆଶ୍ରମ। ଆମେ ଦୁଇ ଜଣ ହେବୁ ଆଶ୍ରମର ସେବକ-ସେବିକା।"

୦୦୦



# କେସ୍ ଷ୍ଟଡ଼ି

ସୌମେନ୍ ଚୌଧୁରୀ ଯେତେବେଳେ ରାଉରକେଲା ସହରକୁ ଆସିଥିଲେ, ସେତେବେଳକୁ ମଧ୍ୟ ଚାକିରିରେ ମରୁଡ଼ି ଲାଗିଲାଣି। ଯଦି କାଁ-ଭାଁ ଗୋଟାଏ ଅଧେ ଚାକିରି ବାହାରି ପଡୁଥିଲା। ତା'ପାଇଁ ଲମ୍ବା ଧାଡ଼ି। ଏଣେ ଲକ୍ଷ ଲକ୍ଷ ଟଙ୍କାର କାରବାର। ହତାଶ ସୌମେନ୍ ଗାଆଁକୁ ଫେରି ଯିବାକୁ ବସିଥିଲେ।

ମଉସା ପୁଅ ଭାଇ ପରାମର୍ଶ ଦେଇ କହିଥିଲେ, "ଆଉ ଚାକିରି ପଛରେ ନଧାଇଁ ବରଂ ଅନ୍ୟ କିଛି ଗୋଟାଏ ଉପାୟରେ ରୋଜଗାର କରିବା ପାଇଁ ଚେଷ୍ଟା କର। ଟଙ୍କା ସହର ଯାକ ଉଡୁଛି, ବୁଦ୍ଧି ଖଟେଇ ପାରିଲେ; ସେ ଟଙ୍କାକୁ ତୁ ଧରି ଆଣି ପାରବୁ। ଯାହି ତାହିକି ତ ଲ'ଟା ପାସ୍ କରିଛୁ। କିଛି ନ ହେଲେ, କଚେରୀକୁ ଯାଇ ବୁଝାବୁଝି କର। ହବ ତ ସିନିୟର ଓକିଲ ଦେଖି ତାଙ୍କ ପାଖରେ ପ୍ରାକ୍ଟିସ୍ ଆରମ୍ଭ କରିଦେ। ଏଡ଼େ ବଡ଼ ସହରରେ ତୋ'ପେଟ ଚାଖଣ୍ଡେ ଅପୋଷା ରହିବ ନାହିଁ।"

ଭାଇଙ୍କ କଥାଟା ସେଦିନ ସିନା ତାକୁ ଅଡୁଆ ଲାଗୁଥିଲା, କିନ୍ତୁ ନିଜ ଡେଣାରେ ଉଡ଼ିବା ଜାଣିବା ପରେ ସୌମେନ୍ ବୁଝିଗଲେ, ଏ'ଭଳି ରୋଜଗାରର ବାଟ ଆଉ କୋଉଠି ନଥିବ।

ବର୍ଷ କେଇଟା ଭିତରେ ସିଭିଲ ଟାଉନସିପ୍‌ରେ ଜାଗା କିଣି ବହୁ ତଳ ପ୍ରାସାଦ ତୋଳି ସାରିଲେଣି। ପୁରୁଣା ସାଇକେଲରୁ ସ୍କୁଟର, ପୁଣି ମାରୁତି କାରକୁ ଛାଡ଼ି ଏବେ ଏ.ସି. ଜେନ୍ ଖଣ୍ଡେ ଧଣି କଚେରୀକୁ ଯାଉଛନ୍ତି। କ୍ରାଇମ୍ କେସ୍ ବ୍ୟତୀତ ସେ ଅନ୍ୟ ଏଣୁ ତେଣୁ କେସ୍ ହାତକୁ ନିଅନ୍ତି ନାହିଁ। କେସ୍ ଧରି ଆସୁଥିବା ଲୋକମାନଙ୍କ ପାଇଁ ସେ ଗୋଟାଏ ସ୍ୱତନ୍ତ୍ର ଏ.ସି. ଚାମ୍ବର ତିଆରି କରେଇ ଦେଇଛନ୍ତି। ସେ ଘରର ସଜବାଜ ଆଉ ଫର୍ଣ୍ଣିଚର ଇତ୍ୟାଦି ଦେଖିଲେ, ସୌମେନ୍‌ଙ୍କର ବ୍ୟାଙ୍କ୍ ବାଲାନ୍ସ କେତେ ଥିବ; କେହି ସହଜରେ କଳ୍ପନା କରିପାରିବେ ନାହିଁ।

ଦୁଇ ବର୍ଷ ତଳେ ତାଙ୍କର ବାହାଘର ହେଇଥିଲା। ଜିରୋରୁ ହିରୋ ସାଜିଥିବା ସୌମେନ୍ ନିଜର ପାରିଲା ପଣିଆକୁ ପ୍ରମାଣିତ କରିଦେଇ ଥିବାରୁ ଅନେକ ଧନାଢ୍ୟ ବ୍ୟବସାୟୀ, ଉଚ୍ଚ ପଦସ୍ଥ ଅଫିସର ଏବଂ ଉଚ୍ଚ ଶିକ୍ଷିତା, ସୁଶ୍ରୀ ତଥା ରୋଜଗାରକ୍ଷମ

କର୍ମଜୀବୀ ମହିଳା ତାଙ୍କୁ ଲାଇନ୍ ଦେଇଥିଲେ । ଶେଷରେ ଖୁବ୍ ଧୂମ୍‌ଧାମ୍‌ରେ ତାଙ୍କର ବାହାଘର ହେଇଥିଲା - ଜଣେ ବିଖ୍ୟାତ ଅସ୍ତ୍ର ବ୍ୟବସାୟୀଙ୍କର ଏକମାତ୍ର ଅଲିଅଳ କନ୍ୟା କଳ୍ପନା ସହିତ ।

ଅସ୍ତ୍ର ବ୍ୟବସାୟୀ ଜଣକ ଥରେ ଗୋଟାଏ କେସ୍‌ରେ ଛନ୍ଦି ହେଇ ଯାଇଥିଲେ । ଅନ୍ୟାୟ, ଅନୀତି ଉପାୟରେ ସେ କୋଟି କୋଟି ଟଙ୍କା ରୋଜଗାର କରି ଆୟକର ବିଭାଗକୁ ଠକି ଆସୁଛନ୍ତି ବୋଲି କେସ୍‌ଟାଏ ହେଇଥିଲା । କ୍ରାଇମ୍ କେସ୍ ହେଣ୍ଡଲ୍ କରୁଥିବା ସୌମେନ୍ ତାଙ୍କୁ ଯେଉଁଭଳି କୌଶଳରେ ଉଦ୍ଧାର କରିଦେଲେ, ସେଥିରେ ବ୍ୟବସାୟୀ ଜଣକ ହତଚକିତ ହେଇ ଯାଇଥିଲେ ।

ସୌମେନଙ୍କର ସେହି ଗୋଟିଏ କେସ୍‌ରେ ପାଞ୍ଚ ଲକ୍ଷ ଟଙ୍କା ରୋଜଗାର ହେଇ ଯାଇଥିଲା । ବ୍ୟବସାୟୀଙ୍କ ଘରକୁ ନିୟମିତ ଯିବା ଆସିବା ବି ଚାଲିଲା । ତାଙ୍କର ଏକମାତ୍ର ଅସୁନ୍ଦରୀ କନ୍ୟା ସହିତ ଗଢ଼ି ଉଠିଥିବା ସଂପର୍କକୁ ସ୍ଥାୟୀ କରିବା ପାଇଁ ସୌମେନ୍ ହିଁ ପ୍ରସ୍ତାବ ଦେଇଥିଲେ । ଏଥିରେ କେହି ନାରାଜ ନଥିଲେ ।

ସୌମେନ ଜାଣିଥିଲେ, ଅସୁନ୍ଦରୀ କଳ୍ପନା ସହିତ ବାହାଘର ପରେ ପରୋକ୍ଷରେ ଶ୍ୱଶୁରଙ୍କର ଅକଳନ ଅର୍ଥର ମାଲିକ ସିଏ ହିଁ ହେବ । ତାହା ହିଁ ହେଲା । ଅର୍ଦ୍ଧ ନିର୍ମିତ ପ୍ରାସାଦ ତାଙ୍କର ଦ୍ରୁତ ଗତିରେ ନଭଶ୍ଚୁମ୍ବୀ ହେଲା । ଉପର ଦୁଇ ମହଲାରେ କଳ୍ପନାର ବେଡ୍ ରୁମ୍, ଡ୍ରେସିଂ ରୁମ୍ ଏବଂ ଅନ୍ୟାନ୍ୟ ପ୍ରାଚୁର୍ଯ୍ୟ। ଦୁଇଟା ଚାକରାଣୀ କଳ୍ପନାର ସମସ୍ତ କଥା ବୁଝାବୁଝି କରନ୍ତି । ତଳ ଦୁଇଟି ମହଲାକୁ ସୌମେନ୍ ତାଙ୍କ ନିଜ ପାଇଁ ଆଉ ତା'ବ୍ୟବସାୟ ପାଇଁ ରିଜର୍ଭ ରଖିଥା'ନ୍ତି ।

ଓକିଲାତି ବ୍ୟବସାୟ ଖୁବ୍ ଭଲ ଚାଲେ । ଦିନ ରାତି ସେ କ୍ରାଇମ୍ କେସ୍ ଷ୍ଟଡ଼ି କରନ୍ତି । କେବେ କେମିତି ତାଙ୍କୁ କଚେରୀ ବି ଯିବାକୁ ପଡ଼େ । ଅଧିକାଂଶ ଦିନ ସେ କଟକ-ଭୁବନେଶ୍ୱରକୁ ଟୁର୍‌ରେ ଯାଆନ୍ତି ।

ମୋଟାମୋଟି ଭାବେ କହିବାକୁ ଗଲେ, ସେ ତାଙ୍କ ଷ୍ଟଡ଼ିରେ ଏତେ ବ୍ୟସ୍ତ ରହନ୍ତି ଯେ, ମାସ ମାସ ଧରି ଉପର ମହଲାକୁ ଯାଇପାରନ୍ତି ନାହିଁ । କଳ୍ପନା ବୁଝିଛନ୍ତି, ପଇସା ହିଁ ସବୁ କିଛି । ପଇସା ଥିଲେ, ସମଗ୍ର ଦୁନିଆକୁ କିଣି ନେଇହେବ । କେଡ଼େ କେଡ଼େ ଜ୍ଞାନୀ ଗୁଣି ପଣ୍ଡିତ ବି ମୁଣ୍ଡ ଝୁଙ୍କେଇ ତାଙ୍କ ଆଗରେ ଠିଆ ହେଇ ରହିବେ । ସମସ୍ତ ପ୍ରକାର ସୁଖ ସୌଭାଗ୍ୟ ଦାତା ହେଉଛି, ପଇସା । କିନ୍ତୁ, ପଇସା ତ ଏତେ ସହଜରେ ପାଖକୁ ଆସେ ନାହିଁ । କିମ୍ବା ସବୁ ଦିନ ପାଇଁ ଆସି ପାରିବ ନାହିଁ । ଏଥିପାଇଁ ସମୟର ଗୋଟାଏ ସୀମା ରହିଛି । ଯେତେବେଳେ ସୁଯୋଗ ମିଳିଛି, ତାକୁ ଉପଯୁକ୍ତ ଭାବେ ବିନିଯୋଗ କରିବା ଦରକାର । ଅନ୍ୟ କଥା ପରେ ।

ସୌମେନବାବୁଙ୍କର ଏବେ ବ୍ୟବସାୟଟା ଖୁବ୍ ଭଲ ଚାଲିଛି । ଗୋଟାଏ ଗୋଟାଏ କେସ୍‌ରେ ଲକ୍ଷ ଲକ୍ଷ ଟଙ୍କା ଆସୁଛି । ଏତିକି ବେଳେ ତାଙ୍କୁ ଡିଷ୍ଟର୍ବ କରିବା ଉଚିତ ନୁହେଁ । ଅର୍ଥ ପ୍ରାଚୁର୍ଯ୍ୟରେ କଳ୍ପନା ନିଜ କଥା ଭୁଲି ଯାଇଥିଲେ ।

ଥରେ କଳ୍ପନାର ବୋଉ ତାକୁ ଚେତେଇ ଦେଲେ, "କିଲୋ କଳ୍ପନା ! ଦି'ବର୍ଷ ପୂରି ତିନି ବର୍ଷ ଚାଲିଲାଣି, ମୋ ସାଙ୍ଗରେ ଖେଳିବାକୁ ନାତିଟିଏ ଦେଉ ନାହୁଁ କାହିଁକି ? ସେ ସବୁ ଷ୍ଟାଇଲ୍ ଛାଡ଼ । ଫେସନ୍ କରୁ କରୁ ବୁଢ଼ୀ ହେଇଯିବୁ । ଯାହା ହବାର ଅଛି, ଆଗ ହେଇଯାଉ । ପିଲାମାନେ ବଢୁଥିବେ । ତା'ପରେ ପଛେ ଯାହା

ବ୍ୟବସ୍ଥା କରିବାର କରିବୁ। ମୁଁ କେତେ ଫେସନବାଲୀଙ୍କୁ ଦେଖିଛି, ଶେଷରେ ମୁଣ୍ଡ ବାଡ଼େଇ ହେଇ ଭାଗ୍ୟକୁ ନିନ୍ଦା କରୁଛନ୍ତି। ମୋ ସାନ କୁହା ମାନି ଏ'ବର୍ଷ ମୋତେ ଖେଳିବାକୁ ସାଂଗଟିଏ ଦେ, ବୁଝିଲୁ।"

କଳ୍ପନା ହଠାତ ଏମିତି କଥାଗୁଡ଼ା ବୋଉଠାରୁ ଶୁଣି ଚମକି ପଡ଼ିଲା। ଆଗପଛ କେତେ କଥା ଭାବିଲା। ସତେ ତ ତା'ସାଙ୍ଗରେ ବାହା ହେଇଥିବା ବୀଣା, ମୋନା ଆଉ ସୁନୀ ସମସ୍ତଙ୍କର ତ ପୁଅ ଝିଅ ହେଲେଣି । ମୁଁ ଥରେ ନୂଆ ନୂଆ କି ସୌମେନଙ୍କୁ ମଜାରେ ଏମିତି କହି ପକେଇଥିଲି ଯେ, ସେ ତା'ର ଯେଉଁ ଉତ୍ତର ଦେଲେ, ମୋ ମନ ଥଣ୍ଡା ହେଇଗଲା। ସେହି ଦିନ ଠାରୁ ମୁଁ ତାଙ୍କୁ ଆଉ ଦିନେ ଛୁଆ କଥା କହି ନାହିଁ।

ପରେ ସେ ମୋତେ ବୁଝେଇ ଦେଇଥିଲେ, 'ଛୁଆ ଜନ୍ମ କରିବା ପାଇଁ ମଣିଷ ବାହା ହୁଏ ନାହିଁ। ବରଂ ଜୀବନକୁ ଉପଭୋଗ କରିବାକୁ ହେଲେ, ପ୍ରଥମେ ଯଥେଷ୍ଟ ଟଙ୍କା ଜମା କରି ରଖିବାକୁ ହୁଏ। ସେଥିପାଇଁ ମୋତେ ଅକ୍ଳାନ୍ତ ପରିଶ୍ରମ କରିବାକୁ ପଡୁଛି। ସେ ପିଲାଛୁଆ ଝମେଲାରେ ମୁଁ ଏବେ ପଶିବାକୁ ଇଚ୍ଛା କରୁ ନାହିଁ।'

ମୋତେ ଶୁଣାଇ ଶୁଣାଇ ଆଉ ଥରେ ସେ ତାଙ୍କ ଜଣେ ବନ୍ଧୁଙ୍କୁ ବୁଝାଉଥିଲେ - "ନିଜ ସ୍ତ୍ରୀକୁ ମୁଁ ପ୍ରକୃତରେ ଶାରୀରିକ ଯନ୍ତ୍ରଣା ଦେବାକୁ ଚାହେଁ ନାହିଁ। ପିଲାଟିଏ ଜନ୍ମ ହେଲେ, ସ୍ତ୍ରୀ ଲୋକଟିର ଯେଉଁ କ୍ଷତି ହୁଏ, ତା'ର କଳନା କରିହେବ ନାହିଁ। ସେ କ୍ଷତି ପୂରଣ ନ ହେଉଣୁ ଶିଶୁକୁ ସ୍ତନ୍ୟପାନ କରାଇବାରେ ପୁଣି ମାଆର ରକ୍ତକ୍ଷୟ ହୁଏ।"

ସୌମେନ୍‌ଙ୍କ ଯୁକ୍ତିଟା ସେଦିନ ମଧ୍ୟ ମୋ ମନକୁ ପାଇଥିଲା। ପ୍ରକୃତରେ ଛୁଆ ପିଲାଏ ଜନ୍ମ କରି ହନ୍ତସନ୍ତ ହେବା ପାଇଁ ତ ଆମ ଦେଶରେ ଗରିବ ଲୋକଙ୍କର ଅଭାବ ନାହିଁ।

ମୁଁ ବୁଝିଥିଲି, 'ସୌମେନ ଯାହା କରୁଛନ୍ତି, ସେସବୁ ମୋ ଭଲ ପାଇଁ । ଏତେ ବଡ଼ ନାମକରା ଓକିଲ ହେଇ ସେ ମୋ ଭଳି ଅସୁନ୍ଦରୀ ଝିଅକୁ ନିଜର କରି ନେଇପାରିଲେ, ଏ'କଣ ତାଙ୍କର ମହାନତାର ପରିଚୟ ନୁହେଁ। ମୋର ସୁଖ ପାଇଁ ତ ସେ ଦିନ ରାତି ଖଟୁଛନ୍ତି। ମାସ ମାସ ବାହାରକୁ ଟୁର୍‌ରେ ଯାଇ ରହୁଛନ୍ତି। ଯାହା ରୋଜଗାର କରୁଛନ୍ତି, ସେସବୁ ତ କେବଳ ମୋ ପାଇଁ। ବାପା ମାଆଙ୍କର ଗୋଟିଏ ବୋଲି ପୁଅ। ଏଣେ ଶାଶୁ-ଶ୍ୱଶୁର ଦୁହେଁ ଆରପାରିକୁ ଯାଇ ସାରିଲେଣି। ଆଜି ନ ହେଲେ କାଲିକି ତା'ର ପୁଅ ଜନ୍ମ ହେବ। ସେ ବଳେ ବଳେ ଏ'ଅକଳନ ସଂପତ୍ତିର ଉତ୍ତରାଧିକାରୀ ହେବ।

- କିନ୍ତୁ କାହିଁ ? ସୌମେନ୍ ତ ମୋ ପାଇଁ ସ୍ୱତନ୍ତ୍ର ରାଣୀହଂସପୁରଟିଏ ଗଢ଼ି ଦେଇ ନିଜେ ରାଜନଅରରେ ରହିଲେ। ମୋ ପୁରକୁ ତ ତାଙ୍କର ଦିନେ ବି ବିଜେ ହେଉନାହିଁ ?'

ଏ'କଥା ବୋଉକୁ କେମିତି କହିବି ? ସେ କ'ଣ ମୋ କଥା ବିଶ୍ୱାସ କରିବ ? ଯଦି ବିଶ୍ୱାସ କରେ, ମୋତେ କହିବ, "ତୁ ତ ଟଙ୍କା ରଙ୍କୁଣୀ ହେଇ ତାକୁ ଦିନ ରାତି ଖଟଉଛୁ। ଆଲୋ, ଟଙ୍କା, ରଖି କ'ଣ କରିବୁ ? ଜ୍ୱାଇଁଙ୍କୁ କ'ଣ ତୁ ବୁଝେଇ ପାରୁନୁ ?"

ମୁଁ ବୋଉକୁ ଭୁଲେଇବାକୁ ଯାଇ କହିଦେଲି - "ତୋ ଜ୍ୱାଇଁଙ୍କ କଥା କ'ଣ

କହିବି ? ଯେଉଁ କାମରେ ମନ ଦେଇଥିବେ ନା' ତାକୁ ନ କରି ଛାଡ଼ିବେ ନାହିଁ। କେଡ଼େ ବଡ଼ ବଡ଼ କ୍ରାଇମ୍ କେସ୍ ! ତାକୁ ଷ୍ଟଡ଼ି କରି ଲଢ଼ିବାକୁ ହୁଏ। ସେ ଏଣୁ ତେଣୁ ବାଜେ କଥାରେ ମନ ଦିଅନ୍ତି ନାହିଁ। ତୁ ବ୍ୟସ୍ତ ହଉଛୁ କାହିଁକି ? ସମୟ ହେଲେ, ବଳେ ନାତି-ନାତୁଣୀଙ୍କୁ ଦେଖିବୁ ନାହିଁକି ? ?"

ଆଉ ଦିନେ କଳ୍ପନାର ବୋଉ ସୌମେନଙ୍କ ଘରକୁ ଆସି ରାତିରେ ରହିଗଲେ। ତାଙ୍କୁ ଭାରି ଅଡୁଆ ଲାଗିଲା। ଝିଅଟା ଏକୁଟିଆ ଉପର ଘରେ ଏଣେ ଜ୍ୱାଇଁ ତାଙ୍କର ଚାମ୍ବରରେ ରାତି ସାରା ରହିଲେ। ସେ ସିଧା ଯାଇ ଝିଅକୁ ପଚାରିଲେ - "ଜ୍ୱାଇଁଙ୍କ ସାଙ୍ଗରେ ତୋର କିଛି ପାଟିତୁଣ୍ଡ ଝଗଡ଼ା ହେଇଛି ନା'କ'ଣ ?"

କଳ୍ପନା ବୁଝେଇଦେଲା - "ନାଇଁ ବୋଉ ! ତାଙ୍କର କାମ ବହୁତ। ରାତିସାରା ସେ କେସ୍ ଷ୍ଟଡ଼ି କରନ୍ତି ତ, ଆଉ ଉପରକୁ ଆସି ପାରନ୍ତି ନାହିଁ। ସେଇଠି ଶୋଇ ପଡ଼ନ୍ତି।"

- ବୋଉ କଳ୍ପନାର କଥାରେ ମୋଟେ ସନ୍ତୁଷ୍ଟ ହେଲା ନାହିଁ। ବରଂ ଆହତ ନାଗୁଣୀ ପରି ପାଟି କମ୍ପେଇ କହିଲା - "କି' ଷ୍ଟଡ଼ି ଦେଖଉଛୁ ଲୋ। ତୁ କେବେ ତାଙ୍କ କେସ୍ ଷ୍ଟଡ଼ି କଲୁଣି ନା' ନାହିଁ ?"

ବୋଉର ଶେଷ କଥା ପଦକ କଳ୍ପନା ହୃଦୟରେ ସନ୍ଦେହର କୁହେଳିକା ସୃଷ୍ଟି କଲା।

ସତେ ତ ସେ ଦିନେ ହେଲେ ସୌମେନ୍‌ର କାର୍ଯ୍ୟ କଳାପକୁ ସନ୍ଦେହ ଦୃଷ୍ଟିରେ ଦେଖି ନାହିଁ। ଆଜି ତା'ର ଜନ୍ମଦାତ୍ରୀ ମାଆ କାହିଁକି ଏ'କଥା କହିଲା ? ସେଦିନ ରାତିରେ କଳ୍ପନାକୁ ଆଉ ନିଦ ହେଲା ନାହିଁ। ସେଇ ଚିନ୍ତାର ଅଡୁଆ ସୂତାରେ ସେ ନିଜେ ବି ଛନ୍ଦି ହେଇ ପଡୁଥିଲା। ଏଣେ ସୌମେନକୁ ସେ ସୂତାରେ ବାନ୍ଧି ରଖିବାର କୌଶଳମାନ ବାହାର କରି ଚାଲିଥିଲା।

ତା'ପର ଦିନ କଳ୍ପନା ତା'ର ବୋଉ ସାଙ୍ଗରେ ସୌମେନ୍ ବିଷୟରେ ସମ୍ଭାବିତ ଦୁର୍ଗତି ସଂପର୍କରେ ଆଲୋଚନା କଲେ। କିନ୍ତୁ ସତ୍ୟକୁ ଖୋଜି ବାହାର କରିବା ତା'ପାଇଁ ଏତେ ସହଜ ନଥିଲା।

ଦୁଇ ଦିନ ପରେ କଳ୍ପନା ଖବର ପାଇଲା, ସୌମେନ ପୁଣି ଲମ୍ବା ଟୁର୍‌ରେ ଭୁବନେଶ୍ୱର ବାହାରିଛନ୍ତି। ସେ ମନେ ମନେ ଠିକ୍ କଲା, ଆଜି ସେ ତଳମହଲାକୁ ଯାଇ ଚାମ୍ବରରେ ଥିବା ସମସ୍ତ ଫାଇଲ ପତ୍ରକୁ ଖେଳେଇ ଦେଖିବ। ତା'ବୋଉ ମନରେ ଜାଗ୍ରତ ହୋଇଥିବା ସନ୍ଦେହ ଘେର ଭିତରୁ ପ୍ରକୃତ ସତ୍ୟକୁ ଖୋଜି ବାହାର କରିବ।

ସେଦିନ ସୌମେନ ଏଷ୍ଟିମ ଗାଡ଼ି ନିଜେ ଚଳେଇ ଭୁବନେଶ୍ୱର ବାହାରିଗଲେ। କଳ୍ପନା ଚାମ୍ବରର ଚାବି ନେଇ ଖୋଲିଲା। କୁଢ଼ କୁଢ଼ ଫାଇଲ। ଯାବତୀୟ କ୍ରାଇମ୍ କେସ୍‌ର ରିପୋର୍ଟ। ଜଜ୍‌ମେଣ୍ଟ କପି। ତା' ଭିତରୁ ତା'ର ବାପାଙ୍କ ଦୁର୍ନୀତି ଫାଇଲଟା ମଧ୍ୟ ସେ ଦେଖିଲା। ରାତି ସାରା ସେ ଅନିଦ୍ରା ହୋଇ ସୌମେନ୍‌ର କୌଣସି ପ୍ରକାର ଦୁର୍ଗତିର ଚିହ୍ନ ବର୍ଣ୍ଣ ପାଇଲା ନାହିଁ। ବରଂ ନିଜ ବୋଉକୁ ମନେ ମନେ ବହେ ଗାଳି ଦେଲା।

ସେତେବେଳକୁ ରାତି ପାହି ଆସୁଥାଏ । ହଠାତ ଚାମ୍ବର ଫୋନ୍‌ଟା ଗର୍ଜି ଉଠିଲା । ଲମ୍ବା ରିଂ । ଇଏ ତ ଦୂରରୁ ଆସିଛି । ତେବେ କ'ଣ ସୌମେନ୍ ଯାଇ ଭୁବନେଶ୍ୱରରେ ପହଞ୍ଚି ଫୋନ୍ କରୁଛନ୍ତି ? କିନ୍ତୁ ସିଏ ତ ଜାଣନ୍ତି, ଚାମ୍ବରଟା ରାତିରେ ବନ୍ଦ ଥାଏ । ତେବେ କ'ଣ ତାକୁ ପରୀକ୍ଷା କରିବା ପାଇଁ ସୌମେନ୍ ଫୋନ୍ କରୁଛନ୍ତି ? ସେ ଜାଣନ୍ତି କଳ୍ପନା କେବେ ରାତିରେ ଚାମ୍ବର ଭିତରକୁ ଆସେନା । ହଠାତ ଆଜି ଫୋନ୍‌ରେ ତାକୁ ପାଇ କ'ଣ ଭାବିବେ ? ତେଣୁ ସେ ଫୋନ୍‌ଟାକୁ ଚାହିଁ ରହିଥାଏ । ରିଂ ହେଇ ହେଇ ବନ୍ଦ ହେଇଗଲା ।

କଳ୍ପନାର ମନଟା ଅସ୍ଥିର ହେଲା । ଫୋନ୍‌ଟାକୁ ଧରି ପକେଇ ଥିଲେ, ଭଲ ହେଇଥା'ନ୍ତା କି ଭେଲ ହେଇଥା'ନ୍ତା ; ସେ ନିଜେ ଜାଣି ପାରୁ ନଥିଲା ।

ପୁଣି ରିଂ ବାଜିବା ଆରମ୍ଭ ହେଇଗଲା । କଳ୍ପନା ଆଗପଛ ନ ବିଚାରି ଫୋନ୍‌ଟା ଉଠାଇ ପକାଇଲା । ସେ ପଟରୁ ଶୁଣାଗଲା -

- "ହ୍ୟାଲୋ - ଏଇଟା କ'ଣ ସୌମେନ୍ ଚୌଧୁରୀଙ୍କର ଚାମ୍ବର ?"

- "ହଁ - ହଁ । ଆପଣ କିଏ କହୁଛନ୍ତି ?"

- "ମୁଁ କଟକ ଲାଲବାଗ ଥାନାରୁ ପୋଲିସ ଇନ୍ସପେକ୍ଟର କହୁଛି । ସୌମେନ ବାବୁଙ୍କ ଏଷ୍ଟିମ୍ କାର୍ ଦୁର୍ଘଟଣାଗ୍ରସ୍ତ ହେଇଛି । ଅତ୍ୟନ୍ତ ସାଂଘାତିକ ଅବସ୍ଥାରେ ସେ ବଡ଼ ଡାକ୍ତରଖାନାରେ ଭର୍ତ୍ତି ହେଇଛନ୍ତି । ଆପଣ ଦୟା କରି ତାଙ୍କର ନିଜ ଲୋକଙ୍କୁ ଶୀଘ୍ର ପଠାଇ ଦିଅନ୍ତୁ ।"

- "ହ୍ୟାଲୋ - ହ୍ୟାଲୋ ।"

ଫୋନ୍ କଟିଗଲା । ଏଭଳି ଅଭାବନୀୟ ଦୁର୍ଘଟଣା ସମ୍ବାଦ ଶୁଣି କଳ୍ପନାର ମୁଣ୍ଡ ବୁଲେଇ ଦେଲା । ତୁରନ୍ତ ସେ ବାପାଙ୍କୁ ଫୋନ୍ କରି ସବୁ କଥା ଜଣେଇ କଟକ ଯିବାକୁ ବାହାରି ପଡ଼ିଲା । ବିନା କାରଣରେ ସୌମେନ୍‌ଙ୍କୁ ସନ୍ଦେହ କରି ଆଜି ସେ ଯେଉଁ ଭୁଲ କାମ କରିଛି, ସେଥିପାଇଁ ସେ ନିଜକୁ ଅପରାଧୀ ମନେ କଲା । ବୋଉ ତା'ମନରେ ବିଷ ଭରି ଦେଇଥିବାରୁ ଏଭଳି ଦୁର୍ଘଟଣା ଘଟିଲା ବୋଲି କଳ୍ପନାର ଧାରଣା ହେଲା । ପୁଣି ଥରେ ସେ ବୋଉ ଉପରେ ବିରକ୍ତ ହେଇ ଗାଳି ଦେଲା ।

ବଡ଼ ଡାକ୍ତରଖାନାରେ ପହଞ୍ଚି କଳ୍ପନା ଦେଖିଲା, ସୌମେନଙ୍କର ଅବସ୍ଥା ଅତ୍ୟନ୍ତ ଖରାପ । ଡାକ୍ତର, ନର୍ସ ଓ ଆହୁରି କେତେ ଜଣ ତାଙ୍କୁ ବଞ୍ଚେଇବାକୁ ଆପ୍ରାଣ ଚେଷ୍ଟା ଚଳାଇଛନ୍ତି । ଅସହାୟ ଅବସ୍ଥାରେ କଳ୍ପନା କେବଳ ଭଗବାନଙ୍କୁ ଡାକୁଥିଲା । ତା'ବାପା ବିଡ଼ା ବିଡ଼ା ଟଙ୍କା ବାହାର କରି ଖର୍ଚ୍ଚ କରି ଚାଲିଥା'ନ୍ତି ।

ଅପରେସନ ଥିଏଟରରୁ ସୌମେନ ବାହାରିଲେ । କିନ୍ତୁ ଆଉ କିଛି ନଥିଲା । ଏ'ଖବର ପାଇ କଳ୍ପନା ଚେତା ହରେଇ ଦେଲା । ତାକୁ ପୁଣି ଡାକ୍ତରଖାନାରେ ଭର୍ତ୍ତି କରିବାକୁ ପଡ଼ିଲା ।

କଳ୍ପନାର ବାପା ଲକ୍ଷ୍ୟ କରୁଥିଲେ, ଆଉ ଜଣେ ମହିଳା ସୌମେନର ଡେଡ୍ ବଡ଼ିକୁ କୁଣ୍ଡେଇ ଅତି ବିକଳ ହେଇ କାନ୍ଦୁଥିଲେ । ତା'ପାଖରେ ଦୁଇଟି ଛୁଆ ଠିଆ ହେଇଥିଲେ । ଅନ୍ୟ କେତେ ଜଣ ଲୋକ ସେମାନଙ୍କୁ ସାନ୍ତ୍ୱନା ଦେଉଥିଲେ । ସେ କିଛି ବୁଝି ପାରିଲେ ନାହିଁ । ଏମାନେ ନିଶ୍ଚୟ ତାଙ୍କର କେହି ଦୂର ସଂପର୍କୀୟ ହେଇଥିବେ ବୋଲି ଅନୁମାନ କରିନେଲେ ।

କିଛି ସମୟ ପରେ ସେମାନେ ସୌମେନର ଡେଡ ବଡ଼ି ନେବାକୁ ପ୍ରସ୍ତୁତ ହେଇ ପଡ଼ିଲେ।

ଏଣେ କଳ୍ପନାର ବାପା ତା'ପାଇଁ ବ୍ୟସ୍ତ ଥିଲେ। ବହୁତ ଡେରିରେ ଶୁଣିଲେ ଯେ, ସୌମେନ ଆଗରୁ ଭୁବନେଶ୍ୱର ସତ୍ୟନଗରବାସୀ ସୁରେଶ ମହାପାତ୍ରଙ୍କ ଝିଅକୁ ବିବାହ କରିଥିଲେ। ତାଙ୍କର ଦୁଇଟି ପୁତ୍ର ସନ୍ତାନ ଅଛନ୍ତି। ସେଇଥିପାଇଁ ସେ ବାରମ୍ବାର ଲମ୍ବା ଟୁର୍‌ରେ ଭୁବନେଶ୍ୱର ଆସି ରହନ୍ତି। ଏମାନେ ହେଉଛନ୍ତି - ପ୍ରକୃତରେ ତାଙ୍କର ପରିବାର। ମୋ ଝିଅ ହେଉଛି - କେବଳ ମାତ୍ର ରକ୍ଷିତା। ତାଙ୍କର ମୁଣ୍ଡ ଘୂରେଇ ଦେଲା। କେମିତି ସେ କଳ୍ପନାକୁ ଏ'କଥା କହିବେ ? ସ୍ଥିର କରି ପାରିଲେ ନାହିଁ।

କଳ୍ପନାକୁ ଧରି ସେ ସିଧା ରାଉରକେଲା ଫେରି ଆସିଲେ।

ହଠାତ ଦିନେ ସୌମେନର ଅସଲ ପରିବାର ଆସି ରାଉରକେଲାରେ ପହଞ୍ଚିଲେ। ନଭଶ୍ଚୁମ୍ବୀ ପ୍ରାସାଦକୁ ସେମାନେ ଭଡ଼ାରେ ଦେବାକୁ ଆସିଛନ୍ତି ବୋଲି କଳ୍ପନାକୁ ଜଣେଇ ଦେଲେ। କଳ୍ପନାର ସଂସାରରେ ଝଡ଼ ସୃଷ୍ଟି ହେଲା। ବାପାଙ୍କୁ ଡକେଇଲା। ଅସହାୟ ବାପାଙ୍କର କିଛି କହିବାର ନଥିଲା। ବ୍ୟାଙ୍କ୍ ବାଲାନ୍ସ ସବୁ ତାଙ୍କ ପତ୍ନୀଙ୍କ ଜଏଣ୍ଟ୍ ଏକାଉଣ୍ଟରେ ଥିଲା। ପ୍ରାସାଦଟା ମଧ୍ୟ ତାଙ୍କରି ନାମରେ ରେଜେଷ୍ଟ୍ରି କରାଯାଇଛି।

କଳ୍ପନା ସବୁ ଜାଣି ସାରି କଳାକାଠ ପାଲଟି ଯାଇଥିଲା। ଭାବୁଥିଲା - ମୋ ବୋଉ ହିଁ ସୌମେନ ଦୁର୍ଗତିର କେସ୍‌ଟିକୁ ଠିକ୍ ଭାବେ ଷ୍ଟଡ଼ି କରିପାରିଥିଲା। ମୁଁ ଆଉ ମୋ ବାପା ଆଜି ହାରି ଯାଇଛୁ।

୦୦୦



# ଅନ୍ୟ ଜଣେ ଶ୍ରବଣ କୁମାର

ଆମ ସମାଜରେ ଅନେକ କୁ-ସଂସ୍କାର ଆଉ ଅନ୍ଧ ବିଶ୍ୱାସ ଥିବାରୁ ସରଳ ବିଶ୍ୱାସୀମାନେ ଅଧିକ ଯନ୍ତ୍ରଣା ପାଇଥା'ନ୍ତି । ଶିକ୍ଷିତ-ଅଶିକ୍ଷିତ, ଚାକିରିଆ ବା ବେକାରିଆ ଯିଏ କେହି ବି ହୁଅନ୍ତୁ, ସିଏ ଯେତେବେଳେ ନିଜକୁ ଅସୁରକ୍ଷିତ ବା ଅସହାୟ ମନେ କରନ୍ତି ସେତେବେଳେ ସେ ଅନ୍ଧବିଶ୍ୱାସର ଅନ୍ଧକୂପ ଭିତରକୁ ପଶି ଯାଆନ୍ତି । ଥରେ ଯେଉଁମାନେ ତା'ଭିତରକୁ ପଶି ଗଲେ, ଯେତେ ଚେଷ୍ଟା କଲେ ବି, ସେ ଆଉ ଉପରକୁ ଉଠି ପାରି ନାହାନ୍ତି ।

ସୁବ୍ରତ ମଙ୍ଗରାଜ । ଜଣେ ବେଶ୍ ଉଚ୍ଚ ଶିକ୍ଷିତ ମଣିଷ । କେନ୍ଦ୍ର ସରକାରଙ୍କ ଦପ୍ତରରେ ଉଚ୍ଚ ପଦବୀରେ ଅଧିଷ୍ଠିତ । ଭୁବନେଶ୍ୱରରେ ଦ୍ୱି-ତଳ ପ୍ରାସାଦ, ବ୍ୟାଙ୍କ ବାଲାନ୍ସ, ଚାରିଚକିଆ ଗାଡ଼ି, କେଉଁଥିରେ ଅଭାବ ନାହିଁ । ଶିକ୍ଷିତା ସୁଶ୍ରୀ ପତ୍ନୀ ଅନୁରାଧା, କେବଳ ରୂପରେ ନୁହେଁ, ଗୁଣରେ ମଧ୍ୟ ସେ ସ୍ୱୟଂ ସଂପୂର୍ଣ୍ଣା । ଏ'ସବୁ ସତ୍ୱେ ସୁବ୍ରତ ବାବୁ ସୁଖୀ ନଥିଲେ । ବିବାହର ପନ୍ଦର ବର୍ଷ ବିତିଗଲା, ଅନୁରାଧାଙ୍କର କୋଳକୁ ସନ୍ତାନଟିଏ ଆସି ପାରିଲା ନାହିଁ । ସବୁବେଳେ ଅଫିସ କାମରେ ବ୍ୟସ୍ତ ଥିବାରୁ ସେ ଏ'ଦିଗରେ ଆଗରୁ କେବେ ମୁଣ୍ଡ ଖେଳେଇବାକୁ ସମୟ ପାଉ ନଥିଲେ । କିନ୍ତୁ ଅନୁରାଧାଙ୍କ ନିରିମାଖି ମୁହଁକୁ ଦେଖିଲେ, ସେ ନିଜକୁ ଜଣେ ଅପରାଧୀ ମନେ କରନ୍ତି । ନିଜ କର୍ମକୁ ଧିକ୍କାର କରନ୍ତି । ମନେ ମନେ ଭାବନ୍ତି - 'ଏ' ସବୁ ସଂପତ୍ତିର ଉତ୍ତରାଧିକାରୀ ହେବ କିଏ ? ଭଗବାନ ସବୁ ଦେଇ ଗୋଟିଏ ଜିନିଷରେ ଅଭାବ କଲେ କାହିଁକି ?

- ଏଥିପାଇଁ ଅନୁରାଧା ଆଜୀବନ ଆମିଷ ଛାଡ଼ି ଦେଇଛନ୍ତି । ମୁଁ ପ୍ରତିଦିନ ଦେବଦର୍ଶନ କରେ । କେବଳ ଗୋଟିଏ ପ୍ରାର୍ଥନା କରି ଆସିଛି, "ଭଗବାନ ଆମ କୋଳକୁ ପୁଅଟିଏ ହେଉ କି ଝିଅଟିଏ ହେଉ ଦେଇ ଦିଅନ୍ତୁ ।"

- ଅନୁରାଧା ସବୁ ଓଷା ବ୍ରତ କରନ୍ତି । ତାଙ୍କର ବାଲ୍ୟସାଥୀ ଆଉ କଲେଜ ମେଟ୍, ଯେଉଁମାନେ ଯେତେବେଳେ ଯାହା କିଛି ପରାମର୍ଶ ଦିଅନ୍ତି, ତାକୁ ତ ଗୋଟି ଗୋଟି ଅକ୍ଷରେ ଅକ୍ଷରେ ଅତ୍ୟନ୍ତ ନିଷ୍ଠାର ସହ ଅନୁରାଧା ପାଳନ କରନ୍ତି, କିନ୍ତୁ କାହିଁ ? ଭଗବାନ ବଡ଼ ନିଷ୍ଠୁର ।

- ଡାକ୍ତରୀ ଚିକିତ୍ସା ପାଇଁ ବମ୍ବେ, କଲିକତା ଶେଷରେ ଲଣ୍ଡନ ଯାଇ ଦେଖାଇଲୁ। ସବୁ ଠିକ୍ ଅଛି । ବିଭିନ୍ନ ପ୍ରକାର ଚେରମୂଳ ଖାଇଲୁ। ଗୁଣି-ଗାରେଡ଼ି ବି ହେଲା । କିନ୍ତୁ ସବୁଥିରେ ବିଫଳ ।

- ଅନୁରାଧାଙ୍କ ବୁଢ଼ୀ ମା'ଙ୍କୁ ପାଖାପାଖି ଶହେ ବର୍ଷ ହେବ । କାନକୁ ଆଉ ଶୁଭେ ନାହିଁ । ଆଖିକୁ ଟିକେ ଟିକେ ଦିଶେ । ତାଙ୍କୁ ଥରେ ଆମ ଘରକୁ ଆଣିଥିଲି। ସେ ଯେଉଁ ପରାମର୍ଶ ଦେଲେ, ତାହା ଥିଲା ଅନନ୍ୟ । ଅତ୍ୟନ୍ତ କଠୋର । ଅନୁରାଧା ଅସହାୟ ମାତୃତ୍ୱ କ୍ରନ୍ଦନ କରୁଥିଲା, ସେ ନିଜ ଜୀବନ ବିନିମୟରେ ମଧ୍ୟ ସନ୍ତାନଟିଏ ଚାହୁଁଥିଲେ । ବିଷ୍ଠାରୁ ପୋକଟିଏ ଆଣି ଖାଇବା, ତାଙ୍କ ପାଇଁ କଷ୍ଟ ହେଲା ନାହିଁ । ଏ'ସବୁ କାମ ମୋ ଅଜାଣତରେ ଅନୁରାଧା କରି ନେଇଥିଲେ।

- ବର୍ଷକ ପରେ ସେ ବୁଢ଼ୀମା' ମରିଗଲେ । ସେ ଯେଉଁ ଦିନ ମରିଗଲେ, ଠିକ୍ ସେହିଦିନ ଆମର ପୁଅଟିଏ ଜନ୍ମ ହେଲା । ଅନେକ ଦିନ ପରେ ଅନୁରାଧାଙ୍କର ପୁଅ ଜନ୍ମ ଖବରଟା ସମଗ୍ର ସହରକୁ ଉତ୍ସବ ମୁଖରିତ କରି ପକାଇଲା । ଖିଆ-ପିଆ, ଭୋଜି-ଭାତ, ବନ୍ଧୁ-ବାନ୍ଧବଙ୍କର ଆଗମନରେ ସହରର ରୂପ ବଦଳିଗଲା। ଆମ ଦୁହିଁଙ୍କର ମନ ଆନନ୍ଦରେ ନାଚି ଉଠିଲା। ଆକାଶର ଚାନ୍ଦକୁ ହାତରେ ପାଇଗଲା ପରି ଆମକୁ ଲାଗିଲା। ବଂଶ ରକ୍ଷା କରିବା ସଂଗେ ସଂଗେ ପୁଅଟି ବୃଦ୍ଧକାଳରେ ପିତା-ମାତାଙ୍କୁ ସାହା ହେବାକୁ ଜନ୍ମ ନେଇଛି, ତେଣୁ ସମସ୍ତେ ତା' ନାଁ ରଖିଲେ, ଶ୍ରବଣ କୁମାର ।

- ପୁରାଣର ଶ୍ରବଣ କୁମାରକୁ ଜନ୍ମ ଦେବା ପାଇଁ ଅନ୍ଧ ମୁନୀ ଏବଂ ତାଙ୍କ ପତ୍ନୀ ଘୋର ତପସ୍ୟା କରିଥିଲେ । ତା'ର ମୁଖ ଦର୍ଶନ କରିବା ମାତ୍ରେ ସେମାନେ ଦୃଷ୍ଟିଶକ୍ତି ହରାଇବେ, ଏ'କଥା ଜାଣି ମଧ୍ୟ ପିତାମାତା ଦୁହେଁ ଶ୍ରବଣ କୁମାରକୁ ଦେଖିବାକୁ ବ୍ୟାକୁଳ ହୋଇଥିଲେ। ଶେଷରେ ସେମାନେ ଦୃଷ୍ଟିଶକ୍ତି ହରାଇ ଦେବାକୁ ଶ୍ରେୟ ମନେ କରି ପୁତ୍ରମୁଖ ଦର୍ଶନ କରିଥିଲେ । ସତରେ ପୁତ୍ରଲାଭର ବ୍ୟାକୁଳତା କେବଳ ଅପୁତ୍ରିକମାନେ ହିଁ ଜାଣନ୍ତି ।

- ଆମ ଶ୍ରବଣର ଖୁସି ପାଇଁ ମୁଁ ସମସ୍ତ ପ୍ରକାର ସୁବିଧା ସୁଯୋଗ ଖଞ୍ଜି ଦେଇଥିଲି। ଅନୁରାଧା ତା'ର କୌଣସି ଅଭାବ ରଖି ନଥିଲେ । ଚାହୁଁ ଚାହୁଁ ତା'ର କଲେଜ ପଢ଼ା ବି ଶେଷ ହୋଇଗଲା । ମୁଁ ଲକ୍ଷ୍ୟ କରୁଥିଲି, ଶ୍ରବଣର କାର୍ଯ୍ୟକଳାପ ଆଉ ବ୍ୟବହାର କେମିତି ମୋତେ ଖାପଛଡ଼ା ଖାପଛଡ଼ା ଲାଗୁଛି । ଅନୁରାଧା ତ ପୁତ୍ର ସ୍ନେହରେ ବିଭୋର ହୋଇ ଯାଇଥିଲେ ।

- ମୋ ଚାକିରି ଅବଧିର ଅବଗଣନା ଚାଲିଥାଏ । ଆଉ ମାତ୍ର ଛଅ ମାସ ଥାଏ । ଦିନେ ଖବର ପାଇଲି, ଷ୍ଟେସନ ପାଖ ହୋଟେଲରେ ଶ୍ରବଣ ଡ୍ରଗ୍ସ ନେଉଛି । ଅଚାନକ ଯାଞ୍ଚ କରି ଜାଣିଲି - ଶ୍ରବଣର ଅବସ୍ଥା ଚରମରେ ପହଞ୍ଚି ଗଲାଣି । ତା'ର ଆଉ ହିତାହିତ ଜ୍ଞାନ ନାହିଁ । ସେଦିନ ପ୍ରଥମ କରି ତା'ଗାଲରେ ମୁଁ ଦୁଇ ଚାପୁଡ଼ା କଷି ଦେଲି । ସେହି ଦିନଠାରୁ ତା'ର ସମସ୍ତ ହାତ ଖର୍ଚ୍ଚ, ପକେଟ ଖର୍ଚ୍ଚ ବନ୍ଦ କରିଦେଲି । ପୁଅର ଅବସ୍ଥା ଦେଖି ଅନୁରାଧା କାନ୍ଦି କାନ୍ଦି ଶୁଖି କଣ୍ଟା ହୋଇଗଲେ। ଚୋର ମାଆ ତ କବାଟ କିଳି କାନ୍ଦେ । କାହାକୁ କ'ଣ କହିବେ ?

- ଦିନେ ଶ୍ରବଣ ଜିଦ୍ ଧରିଲା, ଚାକିରି କରିବ । ବାପା ମାଆଙ୍କ

ହାତଟେକାକୁ ସେ ଘୃଣା କରେ ବୋଲି ଲୋକଠୋକ୍ ଜଣେଇ ଦେଲା । ବିଭିନ୍ନ ଜାଗାରେ ଇଣ୍ଟରଭ୍ୟୁ ଦେଲା । କିନ୍ତୁ ତା'ର ଆଚରଣ ଢଙ୍ଗରଙ୍ଗ ଖାପଛଡ଼ା ଥିବାରୁ ସବୁ ଜାଗାରେ ସେ ବିଫଳ ହେଲା । ଅତ୍ୟନ୍ତ ହତାଶ ହୋଇ ଦିନେ ସେ ତା'ର ବନ୍ଧୁ ରାଜୀବ ଘରକୁ ଯାଇଥିଲା । ସେଇଠି ଶୁଣିଲା, ଯା'ଭିତରେ ରାଜୀବ ଚାକିରି ପାଇଯାଇଛି, କମ୍ପେସୋନେଟ୍ ଗ୍ରାଉଣ୍ଡରେ ।

- ଶ୍ରବଣ ଅନ୍ୟମନସ୍କ ହେଇ ଭାବିଲା - "ବାପାଙ୍କର ଚାକିରି ଆଉ ମାତ୍ର ଚାରି ମାସ ଅଛି । ରିଟାୟାର୍ଡ ହୋଇଗଲେ ଗଲା । ରାଜୀବର ବାପାଙ୍କ ପରି ଯଦି କିଛି ହେଇଯାଆନ୍ତା, ବରଂ ଆଗାମୀ ତିରିଶ ବର୍ଷ ପାଇଁ ମୁଁ ଚାକିରିଟା କରି ପାରନ୍ତି । ନଚେତ୍ ଆଉ କୌଣସି ପ୍ରକାରେ ଚାକିରି ମିଳିବାର ସମ୍ଭାବନା ନାହିଁ ।"

ସେ ଦିନ ଶ୍ରବଣ ଘରକୁ ଫେରି ଦେଖିଲା, ତା' ବାପାଙ୍କୁ ଭୀଷଣ ଜ୍ୱର । ମାଆ ବହୁତ ବ୍ୟସ୍ତ ହେଉଛନ୍ତି; ଡାକ୍ତରଖାନା ନେଇଯିବାକୁ ।

- ଶ୍ରବଣ ଅନ୍ୟମନସ୍କ ହୋଇ ମନେ ପକାଉଥିଲା । ରାଜୀବ କହୁଥିଲା - "ତା'ବାପାକୁ ମଧ୍ୟ ପ୍ରଥମେ ଏହିଭଳି ଭୀଷଣ ଜ୍ୱର ହେଇଥିଲା, ଡାକ୍ତର ପରୀକ୍ଷା କରି କହିଥିଲେ, ତାଙ୍କୁ କ୍ୟାନ୍‌ସର ହେଇଯାଇଛି ।"

କ୍ୟାନ୍‌ସର କଥା ଶୁଣୁଶୁଣୁ ବୁଢ଼ା ଆରପାରିକୁ ଚାଲିଗଲା ।

ଏକପ୍ରକାର ଭଲ ହେଲା । ଆଜିକାଲି କ୍ୟାନ୍‌ସର ଭଳି ଭୟଙ୍କର ରୋଗରେ ଆଉ କେତେ ଜଣ ବା ବଞ୍ଚୁଛନ୍ତି ଯେ, ଅଯଥାରେ ତାଙ୍କ ପାଇଁ ଟଙ୍କାଗୁଡ଼ାଏ ଖର୍ଚ୍ଚ କରିଥା'ନ୍ତେ ? କହିବାକୁ ଗଲେ, ବୁଢ଼ାଟା ସମଝଦାର ଥିଲା । ଏଣେ ରାଜୀବ ଶୁଖିଲାରେ ଶୁଖିଲାରେ ବାଜିଆଟା ମାରିନେଲା ।

ମାଆ ସେ ଘରୁ ଡାକ ପକେଇଲେ, "କିରେ ! ସେଇଠି ଠିଆ ହେଇଛୁ କ'ଣ ? ଗାଡ଼ି ବାହାର କର । ବାପାଙ୍କୁ କ୍ଲିନିକ୍ ନେଇକି ଯିବା ପରା । ତାଙ୍କର ଚେତା ବୁଡ଼ି ଯାଉଛି ।"

ଶ୍ରବଣ ଗାଡ଼ିରେ ଚାବିଟା ଲଗେଇ ମାଆକୁ ପଚାରିଲା - "ରାଜୀବ ବାପା ଯେଉଁ ଡାକ୍ତରଙ୍କୁ ଦେଖାଇଥିଲେ, ସେଇଠିକି ନେଇଯିବା ତ ?"

"ନାଇଁ ନାଇଁ । ଡକ୍ଟର ମହାପାତ୍ରଙ୍କ ପାଖକୁ ନେଇକି ଚାଲ । ବାପାଙ୍କୁ ସେ ଭଲକି ଜାଣନ୍ତି । ତାଙ୍କର ଡାଏଗ୍ନୋସିସ୍ ସେଣ୍ଟର ବି ଭଲ ।"

ଶ୍ରବଣର ମାଆ ତରବର ହେଇ କହିଲେ ।

ଶ୍ରବଣ କହିଲା - "ନାଇଁ ମା', ତାଙ୍କର ସେଇଠି କ୍ୟାନ୍‌ସର ରୋଗ ଟେଷ୍ଟ୍ ହୁଏ ନାହିଁ । ଅଯଥାରେ ଖାଲି ଖର୍ଚ୍ଚାନ୍ତ ହେବା ।"

ଚମକି ପଡ଼ିଲେ ଅନୁରାଧା ।

କହିଲେ, "ସାଧାରଣ ଜ୍ୱରଟା ତୋ ବାପାଙ୍କ ମୁଣ୍ଡକୁ ଉଠି ଯାଇଛି, ତୁ ଏମିତି ଅଲକ୍ଷଣା କଥାଗୁଡ଼ା କେମିତି ମୁହଁରେ ଧରି ପାରୁଛୁ ରେ ?"

"ନାଇଁ ମା' । ବାପାଙ୍କର ଚାକିରି ଆଉ ମାତ୍ର ଚାରି ମାସ ଅଛି । ଏବେଠୁ ଯଦି ତାଙ୍କୁ କ୍ୟାନ୍‌ସର ହୋଇ ଯାଇଥାଏ, ବରଂ ଭଲ । ରିଟାୟର୍ଡ ପରେ ଆଉ ମୋତେ କମ୍ପେସୋନେଟ୍ ଚାକିରି ମିଳି ପାରିବ ନାହିଁ ।"

ଅନୁରାଧା ବୁଝିଗଲେ, ପୁଅ କଥାର ଅସଲ ମର୍ମବାଣୀ । ରାଗ ଜରଜର

ଦେହଟା ତାଙ୍କର ଜଳି ଉଠିଲା । ହାତ ଦୁଇଟାରେ ଆସିଗଲା ସିଂହର ବଳ । ଦାନ୍ତ କଡ଼ମଡ଼ କରି ସେ ଶ୍ରବଣ କୁମାର ଚୁଟିକୁ ଧରି ଘୋଷାଡ଼ି ଆଣିଲେ, ଗାଡ଼ିର ତଳକୁ। ଦୁମ୍‌ଦାମ୍ କରି ବସେଇ ଦେଇଗଲେ, ବିଧା ଆଉ ଗୋଇଠା । ପାଖରେ ଠିଆ ହେଇଥିବା ଚାକରାଣୀଟା ଖାଲି ଥରୁଥିଲା, ମା'ଙ୍କର ଦୁର୍ଗା ଅବତାରକୁ ଦେଖି ।

ଅତ୍ୟଧିକ ଉତ୍ତେଜନାରେ ଅନୁରାଧା ସଂଜ୍ଞାହୀନ ହୋଇ ତଳେ ପଡ଼ିଗଲେ ।

ଚାକରାଣୀ ତାଙ୍କୁ ସାଷ୍ଟମ କରୁଥିଲା ।

ଶ୍ରବଣ ଉଠି ଠିଆ ହେଲା ।

ତରବର ହେଇ ସେ ବାପାଙ୍କୁ ଏକାଥରେ ଟେକି ନେଇ ଗାଡ଼ିରେ ଶୁଆଇ ଦେଲା।

ଦ୍ରୁତ ଗତିରେ ଗାଡ଼ିକୁ ନେଇ ରଖି ଦେଲା, ସେଇ କ୍ଲିନିକ୍ ଆଗରେ । ଯେଉଁଠି ରାଜୀବ ବାପାର କ୍ୟାନ୍‌ସର ରୋଗ ନିରୂପଣ ହେଇଥିଲା ।

୦୦୦



# ତୃଷାର୍ତ୍ତ ସାଗର

ମଧୁଛନ୍ଦା ଡୋର ସ୍କ୍ରିନ୍ ଆଡ଼େଇ ଦେଇ ଘର ଭିତରକୁ ପଶିଲା। ଶାଢ଼ୀ ବଦଳେଇବା ପୂର୍ବରୁ ସେ ସବୁ ଦିନ ପରି ବେଡ଼ରୁମ୍ ଭିତରକୁ ଯାଇ ଆଖି ବୁଲେଇ ନେଲା। ଖଟ ଉପରେ ଚୁନି କାନ୍ଥକୁ ଆଉଜି ବସିଛି। ଆଜି ଚୁନିର ମୁହଁଟା କାହିଁକି ଶୁଖି ଯାଇଛି ? ଭେନିଟ୍ ବ୍ୟାଗ୍‌ଟାକୁ ଟେବୁଲ ଉପରେ ଥୋଇ ଦେଇ ମଧୁଛନ୍ଦା ପଚାରି ଦେଲା, "କ'ଣ ହେଲା କି ଚୁନି ! ଏମିତି ମନଦୁଃଖ କରି ବସିଛୁ ଯେ...।"

ମଧୁଛନ୍ଦାର ବୋଉ ସେ ଘରୁ ଚଡ଼ା ଗଳାରେ ଉତ୍ତର ଦେଲେ - "ମୁଁ ଆଉ ତାକୁ ପାରିବିନି। ତମେ ଦି'ଜଣ ଆଉ କୋଉଠି ଗୋଟାଏ ଘରଭଡ଼ା ନେଇ ରୁହ। ଟୋକି ଖଣ୍ଡକ ମାଆକୁ ବଳି ଗଲାଣି।"

ପାଖକୁ ଆସି ମୁହଁକୁ ଝାଡ଼ି ପୁଣି କହିଲେ - "ବୁଝିଲୁ ଛନ୍ଦା ! ମୁଁ ସଫା ସଫା କହି ଦଉଛି, ମୋର ଆଉ ବଳ ନାହିଁ କି ବୟସ ନାହିଁ। ବହୁତ ହେଇଗଲା। ଚବିଶ ବର୍ଷ କାଳ ତୋର ସେବା କରି କରି କେତେ ଦେଇ ନେଇ ବାହା ଦେଇଥିଲି। ପୁଣି ଦଶ ବର୍ଷ ହେଲା, ତମ ଦି'ଜଣଙ୍କର ଯଥେଷ୍ଟ ସେବା କଲିଣି। ଆଉ ପାରିବି ନାହିଁ। ତୁ ତ ହତଭାଗିନୀଟାଏ। ତୋ'ଭାଗ୍ୟକୁ ଆଦରି ତୁ ଯେଉଁଠି ରହୁଛୁ ରହ। ଆମକୁ ଟିକେ ଶାନ୍ତିରେ ରହିବାକୁ ଦେ।"

ଛନ୍ଦା ବୁଲି ପଡ଼ି ପଛକୁ ଚାହିଁ ଦେଖିଲା - ତା'ର ମମତାମୟୀ ବୋଉର ଚଣ୍ଡୀ ବେଶ । ତା'ପାଟିରୁ ବାହାରି ପଡ଼ିଲା, "କ'ଣ ହେଉଚି ବୋଉ ! ଚୁନି ଆଜି କ'ଣ ବଦମାସି କରିଛି ? ମୋତେ କହ। ମୁଁ ତାକୁ ପିଟି ପିଟି ମାରି ଦେବି ପଛେ, ତୁ ଆଉ ଏମିତି ମୋ କଟା ଘା'ରେ ଚୂନ ଦେ'ନା।"

ବୋଉ ପୁଣି ଗର୍ଜି ଉଠିଲେ- "ଆଉ ହବ କ'ଣ ? ତୋ'ଝିଅର ସେହି ଗୋଟାଏ ଜିଦ୍। ବାପୁନ୍‌ର କଲମରେ ଲେଖିବ। ଲେଖୁ ଲେଖୁ ତାକୁ ଭାଙ୍ଗିବ । ତା'ପରେ ଘରେ ଲାଗି ରହିଥିବ, ଖଣ୍ଡଯୁଦ୍ଧ - ମହାଭାରତ।

- ବୁଝିଲୁ ଛନ୍ଦା, ସେଦିନର କଥା ଥିଲା ଭିନ୍ନ। ଏବେ ବାପୁନ୍ ବୁଝିଲାଣି,

ଏ'ଘରଟା ତା'ବାପାର। ତମେ ଦି'ଜଣ ତାଙ୍କ ଦୟାରେ ଏଠି ଆଶ୍ରୟ ନେଇଚ। ସେ ଚାହେଁନା, ତା'ଜିନିଷ ଉପରେ ଆଉ କେହି ଭାଗୀଦାର ହୁଅନ୍ତୁ। ବେଳ ଥାଉ ଥାଉ ତୁ ଅନ୍ୟ କିଛି ବ୍ୟବସ୍ଥା କର। ତୁ ଏଠୁ ଚାଲି ଗଲେ ଯାଇ, ମୁଁ ବି ଟିକେ ଶାନ୍ତିରେ ରହି ପାରିବି।"

- "ତୁ ଏ'କଣ ସବୁ କହୁଛୁ? ଏ'କ'ଣ ତୋ ମନର କଥା ନା' ତତେ ଏ'କଥା କହିବାକୁ କିଏ ଟ୍ରେନିଂ ଦେଇଛି ? ?"

"ଏତେ କଥା କହିବାକୁ ମୋର ବେଳ ନାହିଁ।" ଏତିକି କହିଦେଇ ବୋଉ ମୁହଁ ବୁଲେଇ ଦେଇ ଚାଲି ଯାଉଥିଲେ।

ଛନ୍ଦା ତାଙ୍କ ପାଖକୁ ମାଡ଼ିଯାଇ କହିଲା - "ହଁ, ବୋଉ ଆଜି ତତେ କହିବାକୁ ପଡ଼ିବ। ମୁଁ ତ ଏଠିକି ଆସିବାକୁ ମୂଳରୁ ମନା କରୁଥିଲି। ତୋର ଜିଦ୍ ଆଉ ଏଇ ଚୁନିର ସୁରକ୍ଷା ପାଇଁ, ଏ'ଘରକୁ ଆଶ୍ରୟସ୍ଥଳ ବୋଲି ଧରି ନେଇଥିଲି। ଆଜି ଯଦି କହିବୁ, ମୁଁ ଯେମିତି ଆସିଥିଲି, ସେମିତି ଚାଲିଯିବି।"

"ମୁଁ ଜାଣେ, ବାପା ମରିଗଲା ଦିନରୁ ତୋ'ଛଡ଼ା ଏ'ଘରେ ମୋ'ର ନିଜର ହେଇ କେହି ନାହିଁ। ଭାଇ ବୋଲି ଯିଏ, ସିଏ ତ ସୁନ୍ଦରୀ ଭାଉଜଙ୍କ ଗନ୍ଧ ଶୁଙ୍ଘି ମେଣ୍ଢା ପାଲଟି ଯାଇଛି। ତା'ର କଥାର କିଛି ବି ମୂଲ୍ୟ ନାହିଁ। ଏଥର ତୁ ସଫା କହିଦେ, ତୋ'ର ଇଚ୍ଛା କ'ଣ ? ଛୁଆଟା ତ'ଏକଜିଦିଆ ହେଇ ଯାଇଛି। ମୁଁ ଆଉ କ'ଣ କରି ପାରିବି ? ରାତି ପାହିଲେ, ଅଫିସ ଚିନ୍ତା। ତେଣେ ଫିଲ୍ଡକୁ ଯିବାକୁ ପଡୁଛି।

- ହଉ, ଠିକ୍ ଅଛି। ମୁଁ କାଲି ସକାଳୁ ଏ'ଘରୁ ବାହାରି ଯିବି। ଯଦି ନିଜକୁ ସମ୍ଭାଳି ନ ପାରିବି, ତେବେ ମାଆ-ଝିଅ କିରୋସିନି ଢାଳି ହେଇ ଦିଆସିଲି ମାରିଦେବୁ। ସବୁଦିନ ପାଇଁ କଳଙ୍କ ଲିଭିଯିବ। ତୁ ଏଠି ଚିରଦିନ ଶାନ୍ତିରେ ରହି ପାରିବୁ। ଏବେ ହେଲା ତ !"

ଛନ୍ଦାର ପାଟି ଶୁଣି ସେ ଘରୁ ଭାଇ-ଭାଉଜ ଉଠି ଆସିଲେ। ବାପୁନ୍ ଦୌଡ଼ି ଯାଇ ଖଟ ଉପରେ ବସିଥିବା ଚୁନିକୁ କୁଣ୍ଢେଇ ପକେଇଲା।

ବୋଉ ଆହୁରି କ'ଣ କେତେ କହିବାକୁ ଯାଉଥିଲା। ଭାଉଜ ତା' ପାଟିରେ ହାତ ଦେଇ କହିଲେ, "ଆଉ ବୋଉ! ତମେ ଛନ୍ଦାକୁ ଢେର ବେଶି କହି ସାରିଲଣି। ପିଲାଙ୍କ କଳିକୁ ନେଇ ଏମିତି କ'ଣ ହଉଚ ? ଛନ୍ଦା ଆଉ ଚୁନିଙ୍କୁ କୁଆଡ଼େ ଯିବାକୁ ମୁଁ ଦେବି ନାହିଁ। ସେମାନେ ଏଇ ଘରେ ରହିବେ। ଏ'ଘର ତ ତାଙ୍କ ବାପାଙ୍କର। ତାଙ୍କର ପୂରା ଅଧିକାର ଅଛି, ଏ'ଘରେ। ଚୁନି କ'ଣ ସବୁ ଦିନ ଏଇମିତି ଅଝଟିଆ ହେଇକି ଥିବ କି ?"

- "ଚାଲ ଛନ୍ଦା, ତୁମେ ଲୁଗା ପାଲଟି ପକେଇ ହାତଗୋଡ଼ ଧୋଇ ପକା। ବହୁତ ଥକ୍କା ଜଣା ପଡୁଚ। ମୁଁ ଯାଉଚି, ଗରମ ପକୁଡ଼ି ଦି'ଟା ଛାଣି ଦେବି। ସମସ୍ତେ ମିଶି ଖାଇବା।"

"ଭାଉଜଙ୍କ କେଇ ପଦ କଅଁଳ କଥାରେ ବୋଉର ରାଗ କୁଆଡ଼େ

ଉଡେଇଗଲା। ଭାଇ ମୁହଁ ଖୋଲି କହିଲେ, "ଛନ୍ଦା ତୁ ମୋ ଉପରେ ରାଗିଛୁ। ହଉ ମୁଁ ତତେ କେବେ ବି ଏଣୁ ତେଣୁ କହିବି ନାହିଁ। ରୁନି ତ ମୋର ଭାଣିଜୀ ନୁହେଁ, ଆଜିଠାରୁ ସେ ମୋ ଝିଅ। ହେଲା ? ଆଉ ବାପୁନ୍ ତୋର ପୁତୁରା ନୁହେଁ, ପୁଅ ବୋଲି ଧରି ନେବୁ। ଏବେ ଖୁସି ତ ?"

"ଭାଇଙ୍କ କଥା ଦି'ପଦ ମୋତେ ଅନ୍ୟମନସ୍କ କରିଦେଲା।

- ସତରେ ଆଜିର କେତେ ବଡ଼ କଳାମେଘ ଖଣ୍ଡଟା ସାମାନ୍ୟ ପବନରେ ଉଡ଼ିଗଲା। କିନ୍ତୁ ଏଭଳି ମେଘ ଯେ ଭବିଷ୍ୟତରେ ନ ଆସିବ, କିଏ କହି ପାରିବ ? ଯେତେହେଲେ ବି ମୁଁ ବିବାହିତା। ବାପ ଘର ସଂପତ୍ତି ଉପରେ ମୋର ମୋଟେ ଅଧିକାର ନାହିଁ। ବାପାଙ୍କ ସଂପତ୍ତି, କୋଠାବାଡ଼ି, କେନାଲ ଜମି ଆଉ ନଡ଼ିଆ ବଗିଚା ମୋର ବା ହବ କ'ଣ ?

- ସେସବୁ କ'ଣ ମୋର ନ ଥିଲା କି ? ଏବେ ତ ମାସକୁ ମାସ ପାସ୍‌ବୁକ୍‌ରେ ଦି'ହଜାର ଟଙ୍କା ଡିପୋଜିଟ୍ ହେଉ ରହୁଛି। ତେଣେ ଅଫିସ୍‌ରେ ଜି.ପି.ଏଫ୍. ତିନି ହଜାର କଟା ଚାଲିଛି। ଏଣେ ଭାଇଙ୍କୁ ପ୍ରତି ମାସ ତିନି ହଜାର ଟଙ୍କା ଧରେଇ ଦଉଚି। ଆଉ କ'ଣ ହବ ଏ'ଟଙ୍କା ?

- ବାପା ଚାଲିଗଲା ପରେ ମୁଁ ଧରି ନେଇଥିଲି, ନିଜର ହେଇ ଆଉ ଜଣେ ଲୋକ ରହିଗଲା - ସେ ହଉଛି, ମୋ ବୋଉ। ସେ ପେଟ ଚିରି ଜନ୍ମ ଦେଇଛି। କେବେ ବି ସେ ମତେ ପର କରି ପାରିବ ନାହିଁ।

ବାପାଙ୍କର ସ୍ୱପ୍ନ ଆଉ ବୋଉର ଯତ୍ନ ମୋତେ ନେଇ କୋଉଠି ବୋଲି କୋଉଠି ଥୋଇ ଦେଇଥିଲା। ସୌମ୍ୟ, ଭଦ୍ର ଡାକ୍ତର ବର, ଭୁବନେଶ୍ୱରରେ କୋଠା, କେନ୍ଦ୍ରାପଡ଼ାର ଫାର୍ମ ହାଉସ୍, ପୁଣି ଶ୍ୱଶୁର ପୋଲିସ ଅଫିସର। ବେଶ୍ ଭଲ ବଡ଼ ପରିବାର। ଦୁଇ ଦୁଇଟା ଦିଅର ଇଂଜିନିୟର ଚାକିରି କରନ୍ତି। ଶାଶୁ ତ ଦେବୀ ପ୍ରତିମାଟିଏ। ଯା'ଠାରୁ ଆଉ କ'ଣ କିଏ ଅଧିକ ପାଇଥିବ ?

ମୋ ବାହାଘର ପୂର୍ବରୁ ବୋଉ ଜିଦ୍ ଧରି ବସିଥିଲା, ଯୋଉ ଘରେ ନଣନ୍ଦ ନଥିବ; ମୋ ଝିଅକୁ ସେହି ଘରେ ଦେବି। ଶେଷରେ ବୋଉର ଇଚ୍ଛା ମୁତାବକ ବରଘର ମିଳିଗଲା। ନଣନ୍ଦର କଟାକ୍ଷ କିମ୍ବା ଶାଶୁର ଅତ୍ୟାଚାର ନଥିଲା। ବରଂ ଧନ-ଜନ, ଗୋପ ଲକ୍ଷ୍ମୀରେ ମୋ ସଂସାରଟା ପୂରି ଉଠିଥିଲା। ଏ'ସବୁ ଥିଲେ କ'ଣ ହବ, ମୁଁ ତ ହତଭାଗିନୀଟାଏ। ଭୋଗ କରିବାକୁ ମୋ କପାଳରେ ଲେଖା ହୋଇ ନାହିଁ।

- ବାପା ସିନା ମୋତେ ସଫଳତାର ସିଡ଼ିରେ ଚଢ଼େଇ ଦେଲେ, ମୁଁ କିନ୍ତୁ ନିଜେ ସିଡ଼ିର ତଳକୁ ଓହ୍ଲେଇ ଆସିଲି। କାହାକୁ ଆଉ ଦୋଷ ଦେବି ?"

ଆଖି ମଳି ଦୃଷ୍ଟି ଫେରାଇଲା ମଧୁଛନ୍ଦା। ରୁନି ସେଇମିତି କାନ୍ଥକୁ ଆଉଜି ବସି ରହିଛି। ବାପୁନ୍ ତାକୁ ଟଣା ଓଟରା କରି ଚାଲିଛି। ବଡ଼ ଖୁମାଣି ଝିଅଟା। ଏତେ କଥା ପରେ ବି ଚୁପ୍‌ଚାପ୍। ଇଚ୍ଛା ହଉଥିଲା - ଏ'ଗାଲ ସେ ଗାଲରେ ଦି'ଚାପୁଡ଼ା ମାରିବାକୁ। କିନ୍ତୁ କଥାଟା ଖରାପ ହେଇଯିବ। ଘଟଣାର ମୋଡ଼

ବଦଳି ଯାଇପାରେ । ସେ ନିଜକୁ ସମ୍ଭାଳି ନେଲା । ମୁହଁ ଫଣ ଫଣ କରି ଆର ଘରକୁ ଚାଲିଗଲା - ଶାଢ଼ି ବଦଳେଇବାକୁ ।

ଖଟ ଉପରେ ବସି ପଡ଼ି ସେ ଭାବି ଚାଲିଲା ।

"ଆଜିର ଘଟଣାଟା ଥିଲା, ମୋ ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଯେଉଁ ବୋଉ ମୋତେ ନିଜ ଜୀବନ ଠାରୁ ଅଧିକ ଭଲ ପାଉଥିଲା, ସେ ପୁଣି କହି ପାରିଲା - ମୁଁ ଏଠୁ ଚାଲିଗଲେ ହିଁ ସେ ସୁଖରେ ରହି ପାରିବ । ସତରେ ମୁଁ ହେଉଛି - ସବୁ ଅଶାନ୍ତିର କାରଣ ! ଏ'ପୋଡ଼ାମୁହିଁ ରୁନିଟା ଖାଲି ଜନ୍ମ ନେଲା ନାହିଁ ଯେ, ମୋ ସୁନ୍ନା ସଂସାରଟାକୁ ଚୂନା କରିବାକୁ ଆସି ଯାଇଥିଲା ।

- ଯେଉଦିନ ମୁଁ ସବୁଦିନ ପାଇଁ ପ୍ରଦୀପ ଘରୁ ଗୋଡ଼ କାଢ଼ି ଚାଲି ଆସିଥିଲି, ସେଦିନ, ଠିକ୍ କରିଥିଲି; ଏ'କଳଙ୍କ ଲଗା ମୁହଁଟାକୁ ମୁଁ ଆଉ କାହାରିକୁ ଦେଖାଇବି ନାହିଁ, କି' ବାପ ଘରକୁ ଯାଇ ତାଙ୍କ ଉପରେ ବୋଝ ହେବି ନାହିଁ । ଆତ୍ମହତ୍ୟା କରିବାକୁ ମୋ ପାଇଁ ଅନେକ ଉପାୟ ଥିଲା । କିନ୍ତୁ ମୁହୂର୍ତ୍ତକ ଭିତରେ ମୁଁ ପୁଣି ବଦଳିଗଲି । ରୁନିର ନିରୀହ ଚାହାଣି, ଗୁଲୁଗୁଲିଆ ଚେହେରା ଭିତରେ ମୁଁ ପ୍ରଦୀପଙ୍କୁ ଦେଖି ପାରିଥିଲି । ଏଇ ରୁନିକୁ ବଞ୍ଚାଇ ରଖିବା ପାଇଁ ମୋତେ ବଞ୍ଚିବାକୁ ପଡ଼ିଲା । ସେହିଦିନ ଟିକିଏ କଠୋର ହେଇ ଯାଇଥିଲେ, ସବୁଦିନ ପାଇଁ ମୁଁ ମୁକ୍ତି ପାଇ ଯାଇଥା'ନ୍ତି । ଆଜି ମୁଁ ଖାଲି ବଞ୍ଚିଛି, ସାରା ଜୀବନ ଜଳି ପୋଡ଼ି ହେଇ ଅପବାଦ ଶୁଣିବା ପାଇଁ ।"

- "ଓଃ ! ମୁଣ୍ଡଟା କ'ଣ ହେଇ ଯାଉଛି । ଆଜି ତ ଅଫିସରେ ଗୁଡ଼ାଏ କାମ ଥିଲା । ତେଣେ ଫିଲ୍ଡକୁ ଯାଇ ଦେଖେ ତ ସବୁ ଅବ୍ୟବସ୍ଥା । ଷ୍ଟାଫ୍‌ମାନଙ୍କ ଭିତରେ ପାଟିତୁଣ୍ଡ । ଟିଫିନ୍‌ଟା ଯେମିତି ନେଇକି ଯାଇଥିଲି, ସେଇମିତି ଭେନିଟ୍‌ରେ ପଶିକି ଆସିଛି । ଟିକେ ଶାନ୍ତି ପାଇଁ ଘରେ ପହଞ୍ଚି ଦେଖିଲା ବେଳକୁ ଏଠି ଆହୁରି ଅଶାନ୍ତି । ଟିକେ ଶୋଇ ପଡ଼ିବାକୁ ଇଚ୍ଛା ହଉଛି । ଚା'କପେ ମିଳନ୍ତା କି ? ପଛକଥା ଗୁଡ଼ାକୁ ମନେ ପକେଇ ଆଉ ଲାଭ କ'ଣ ? ବରଂ ଅଧିକ ମୁଣ୍ଡ ବଥା ହେବ ।"

ଭାଉଜ ଚା'କପେ ଆଣି ବଢ଼େଇ ଦେଇ ପାଖରେ ବସି ପଡ଼ିଲେ । ମୋତେ ବୁଝେଇବାକୁ ଯାଇ କହିଲେ - "ଛନ୍ଦା ! ଆଜିର ଘଟଣା ପାଇଁ ମୁଁ ହିଁ ଦାୟୀ । ପିଲାଙ୍କ କଥାକୁ ନେଇ ମୋର ପାଟିତୁଣ୍ଡ କରିବା ଠିକ୍ ହେଇ ନାହିଁ । ତମେ ତ ବୋଉଙ୍କ କଥା ଜାଣିଛ । ତାଙ୍କର ହାଇ ବ୍ଲଡ଼ପ୍ରେସର୍ । ସିଏ କ'ଣ ଦି'ପଦ କହି ଦେଇଛନ୍ତି । ତାକୁ ଧରିବ ନାହିଁ । ତମ ଭାଇ ବି ମୋ ଉପରେ ବିରକ୍ତ ହେଇ ସାରିଲେଣି । ନିଅ ଚା'ଟିକେ ପିଇଦିଅ । ମୁଁ ତେଣେ ରୁନି ଆଉ ବାପୁନ୍‌ଙ୍କ କଥା ବୁଝୁଛି ।"

- "ସତରେ ଭାଉଜଙ୍କ ମିଠା କଥା ପଦକ ମୋ ମନକୁ ଟିକେ ହାଲୁକା କରିଦେଲା । କିନ୍ତୁ ଏମିତି କେତେ ଦିନ ?"

- ଖାଲି ଚା'କପ୍‌ଟାକୁ ଖଟ ତଳକୁ ରଖି ଦେଇ ଛନ୍ଦା ବିଛଣାରେ ଗଡ ପଡ଼ିଲା ।

ଟିକେ ନିଦ ହେଇଗଲେ, ଭଲ ହୁଅନ୍ତା। କିନ୍ତୁ ସମସ୍ତଙ୍କୁ ନିଦଟା କ'ଣ ଏତେ ସହଜରେ ମିଳେ! ବରଂ ଦୁଃଖ ବେଳେ ଅତୀତର ସୁଖଦିନର ମୁହୂର୍ତ୍ତଗୁଡ଼ାକ ଜଳ ଜଳ ଦିଶିଯାଏ। ଇଚ୍ଛା ନକଲେ ବି ପଛ କଥା ଗୁଡ଼ିକ ବାରମ୍ବାର ମନେ ପଡ଼ିଯାଏ। ମନଟା ଘାଣ୍ଟି ଚକଟି ହୁଏ।

- "ବାପା ଥରେ ମୋତେ ବୁଝେଇବାକୁ ଯାଇ କହିଥିଲେ, "ଯେତେଦିନ ଯାଏ ଶାଶୁଘର ଲୋକେ ବୋହୂକୁ ଭଲ ପାଉଥିବେ, ସେତେ ଦିନ ଯାଏ- ବାପଘରେ ଝିଅର ଆଦର ଥିବ। ଝିଅକୁ ଯଦି ଜ୍ୱାଇଁ ଭଲ ପାଉଥିବ, ତେବେ ତା'ର କେହି କିଛି କ୍ଷତି କରି ପାରିବେ ନାହିଁ। ଶାଶୁଘରେ ସମସ୍ତଙ୍କୁ ନିଜର କରି ଚଳି ପାରିବା ହେଉଛି - ଗୋଟାଏ କଳା।"

"ମୁଁ ଆଉ କ'ଣ କରି ପାରିଥା'ନ୍ତି ଯେ ... ?" ବାପା ଥିଲେ, ତାଙ୍କୁ ଆଜି ପଚାରି ଥା'ନ୍ତି; ଯେଉଁ ପୁରୁଷକୁ ତମେ ତମର ଯୋଗ୍ୟ ଜ୍ୱାଇଁ ଭାବି ମୋତେ ଟେକି ଦେଇଥିଲ, ସିଏ ତ ଜଣେ ସ୍ୱାର୍ଥପର, କାପୁରୁଷ ଏବଂ ଚରିତ୍ରହୀନ ମଣିଷ। ଏଭଳି ମଣିଷ କ'ଣ ତା'ର ବିବାହିତା ପତ୍ନୀକୁ କେବେ ଭଲ ପାଇ ପାରେ? ପୁଣି ପଚାରି ଥା'ନ୍ତି - ତୁମ ଇଚ୍ଛା ବିରୁଦ୍ଧରେ ତ ମୁଁ କେବେ କିଛି କାମ କରିନାହିଁ। ତମର ସ୍ୱପ୍ନ ଥିଲା - ମୁଁ ପାଠପଢ଼ାରେ ସବୁ ବେଳେ ଆଗୁଆ ହୁଏ। ପ୍ରତ୍ୟେକ ପ୍ରତିଯୋଗିତାରେ ବିଜୟୀ ହୁଏ, ପୁଣି ଭଲ ଚାକିରି ଖଣ୍ଡେ କରି ତମରି ପାଖ ଅଫିସରେ କେଉଁଠି ପୋଷ୍ଟିଂ ହୁଏ। ସେ ସବୁକୁ ସାକାର କରିଛି। ତମେ ପରାମର୍ଶ ଦେଇଥିଲ, 'ବାହାଘର ପରେ ବି କୌଣସି ପରିସ୍ଥିତିରେ ଚାକିରିଟାକୁ ଛାଡ଼ିବୁ ନାହିଁ। ମାସକୁ ଦଶ ହଜାର ଟଙ୍କା ଅନ୍ୟ କୌଣସି ଉପାୟରେ ତୋ'ପକ୍ଷେ ରୋଜଗାର କରିବା ସମ୍ଭବ ନୁହଁ। ଥରେ ଯଦି ଆବେଗ ପ୍ରବଣ ହେଇ ସେଭଳି ଭୁଲ୍ କରି ଦେଉ ନା'ମୁଣ୍ଡ ପିଟି ଦେଲେ ବି ଆଉ ଫେରି ପାଇବୁ ନାହିଁ। ନିହାତି ଅସୁବିଧା କ୍ଷେତ୍ରରେ ଲମ୍ବା ଛୁଟି ନେଇ ରହିଯିବୁ।'

- "ତମ କଥାକୁ ମୁଁ ଅକ୍ଷରେ ଅକ୍ଷରେ ପାଳନ କରିଛି । କିନ୍ତୁ ବାହାଘରର ମାସେ ନ ପୂରୁଣୁ ପ୍ରଦୀପ ନିଜେ ତାଙ୍କ ତରଫରୁ କହିଲେ - "ଏତେ ଛୁଟି ନେବା ଦରକାର ନାହିଁ। ତମେ ତ ବାପାଙ୍କ ପାଖରେ ମଜାରେ ରହୁଛ। ମୁଁ ଛୁଟି ନେଇ ଯେତେବେଳେ ଇଚ୍ଛା ହେବ, ରାଉରକେଲା ଚାଲିଯିବି। ବରଂ ତମର ଛୁଟି କ୍ରେଡିଟ୍‌ରେ ଥିଲେ, ଆଉ ସାତ-ଆଠ ମାସ ପରେ ଭଲ କାମରେ ଲାଗିବ।"

- "ତାଙ୍କ କଥା ମାନି ମୁଁ ରାଉରକେଲା ଫେରି ଆସିଲି। ଚିଠି ଦେଇ ନିୟମିତ ଉତ୍ତର ଆଉ ପ୍ରତିଶ୍ରୁତି ପାଇଲି। କିନ୍ତୁ ତାଙ୍କର ସବୁ ପ୍ରତିଶ୍ରୁତି କେବଳ ପାଣିର ଗାର ଥିଲା। ମନଟା ଆଉଟୁ ପାଉଟୁ ହୁଏ। ପ୍ରଦୀପକୁ ଦେଖିବାକୁ ମୋ ଦେହ-ମନ ବିକଳ ହୁଏ। କିନ୍ତୁ ତାଙ୍କ ବାଟକୁ ଚାହିଁ ରହିବା କେବଳ ସାର ହେଲା।

ଦିନେ ଆମ ଅଫିସ୍ ଗାଡ଼ି ଭୁବନେଶ୍ୱର ଯାଉଥାଏ। ତମେ ଅନୁମତି ଦେଲ, ମୁଁ ଷ୍ଟାଫ୍‌ଙ୍କ ସାଙ୍ଗରେ ସେହି ଗାଡ଼ିରେ ଭୁବନେଶ୍ୱର ଚାଲିଗଲି। ପ୍ରଦୀପଙ୍କ ଘରେ ପହଞ୍ଚି ମୁଁ ଯାହା ଦେଖିଲି, ସେକଥା ବର୍ଣ୍ଣନାଯୋଗ୍ୟ ନୁହେଁ। ମୋର ହଂସା

ଉଡ଼ିଗଲା । ଆଉ ଜଣେ କିଏ ମୋ ସ୍ଥାନ ସେଠି ମାଡ଼ି ରହିଥିଲା । ମୋତେ ଦେଖି ପ୍ରଦୀପ ହତବାକ୍ ହୋଇ ପଡ଼ିଲେ । ମୋର ଉପସ୍ଥିତି ତାଙ୍କୁ ଅଣନିଶ୍ୱାସୀ କରି ପକାଇଲା । ସେ ତାଙ୍କର ସହକର୍ମୀ ଲେଡି ଡାକ୍ତର ବୋଲି ମୋତେ ପରିଚୟ କରାଇ ଦେଲେ । ସେଦିନ ମୁଁ ମଣିହରା ନାଗ ପରି ଖୁବ୍ କମ୍ପିଥିଲି । ତଥାପି ତମର ସମ୍ମାନ ଆଉ ପ୍ରଦୀପଙ୍କର ମହତ ରକ୍ଷା କରିବାକୁ ଯାଇ, ମୁଁ ସେହିଦିନ ଗାଡ଼ିରେ ରାଉରକେଲା ଫେରି ଆସିଲି । ତମେ ବୋଉଠାରୁ ସବୁକଥା ଶୁଣିସାରି କଥାଟାକୁ ବହୁତ ହାଲୁକା କରି କହିଥିଲ, - "ଯୁଗ ବଦଳି ଗଲାଣି । ଏମିତି ଦୁର୍ଘଟଣା ହେଇଯାଏ । ଅନେକ ଜାଗାରେ ପୁରୁଷ ଡାକ୍ତର, ମହିଳା ଡାକ୍ତର ମିଳିମିଶି ରହୁଛନ୍ତି । ସେମାନେ ଗୋଟିଏ ଜାଗାରେ ଚାକିରି କରନ୍ତି । ସେମାନେ ପୁଣି ଉଚ୍ଚ ଶିକ୍ଷିତ ତଥା ଦାୟିତ୍ୱ ସଂପନ୍ନ ସରକାରୀ ଅଫିସର । ତାଙ୍କୁ ସାଧାରଣ ଲୋକଙ୍କ ଦୃଷ୍ଟିରେ ଦେଖିଲେ ଚଳିବ ?"

- ମୋତେ ବୁଝାଇ ଥିଲ - "ତୁ ପିଲା ଲୋକ, ସଂସାର ବିଷୟରେ ତୋର ବିଶେଷ ଅଭିଜ୍ଞତା ନାହିଁ । ଏମିତି ଅଧୈର୍ଯ୍ୟ ହେବା ତୋର ଉଚିତ ନୁହେଁ ।"

- ସେଦିନ ତମ କଥାକୁ ମାନି ମୁଁ ଧୈର୍ଯ୍ୟ ଧରି ରହିଥିଲି । ତମେ କେତେ ଉପଦେଶ ଭରା କଥା ଲେଖି ତାଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖିଥିଲ । ଦି'ମାସ ବିତିଗଲା, ଉତ୍ତର ଖଣ୍ଡିଏ ପାଇଲ ନାହିଁ । ଚୁନି ସେତେବେଳକୁ ଆଠ ମାସର ହେଇ ପେଟରେ ଥାଏ । ଏ'ଶୁଭ ଖବର ବି ତାଙ୍କୁ ଦିଆଗଲା । ତଥାପି ସେ ଦିନକ ପାଇଁ ରାଉରକେଲା ଆସିଲେ ନାହିଁ । ତମର ଚିଠି ପାଇ ଶ୍ୱଶୁର- ଶାଶୁ ଆଜି ରିଜର୍ଭ କାର୍‌ରେ ମୋତେ ଭୁବନେଶ୍ୱର ନେଇ ଯାଇଥିଲେ । ପ୍ରଦୀପ ନିରୁପାୟ ହେଇ ଚୁପ୍‌ଚାପ୍ ରହିଥିଲେ । ଲେଡ଼ି ଡାକ୍ତର ସିନା ଘରକୁ ଆସୁ ନଥିଲେ, କିନ୍ତୁ ପ୍ରଦୀପ ନିୟମିତ ତାଙ୍କ ବସାକୁ ଯାଉଥିଲେ ।"

- "ସବୁ କଥା ଜାଣି ମଧ୍ୟ ମୁଁ ଭାଗ୍ୟକୁ ଆଦରି ରହୁଥିଲି । ଚୁନି ଜନ୍ମ ହେଲା ତାଙ୍କରି ସରକାରୀ ବସାରେ । ତମେ ତ ତା'ଏକୋଇଶକୁ ଭୁବନେଶ୍ୱର ଯାଇଥିଲ । ଲକ୍ଷ୍ୟ କରିଥିବ, ସେ କେମିତି ମୋ ସହିତ ବ୍ୟବହାର କରୁଥିଲେ । ଛାଡ଼ ! ତମେ ମୋତେ ପୁଣି ଧୈର୍ଯ୍ୟ ଧରିବାକୁ ବାରମ୍ବାର ତାଗିଦ୍ କରି ଫେରି ଆସିଲ ।"

- ତା'ପର ଘଟଣା ଆଉ ତମକୁ କହିବାକୁ ମୋ ପାଟିରେ ଶବ୍ଦଗୁଡ଼ାକ ପଶିପାରୁ ନାହିଁ ବାପା ! ଅନେକ ଯନ୍ତ୍ରଣା-ଅଶାନ୍ତି ଭିତରେ ପ୍ରଦୀପ ଦିନେ ଚୁନିର ପିତୃତ୍ୱକୁ ମଧ୍ୟ ଅସ୍ୱୀକାର କରିଦେଲେ । ଖୋଲାଖୋଲି କହିଲେ, "ଚୁନି ଆଉ କାହାଠାରୁ ଜନ୍ମ ନେଇଛି । ତାକୁ ମୋ ଆଗରୁ ଉଠେଇ କୁଆଡ଼େ ଫୋପାଡ଼ି ଦିଅ । ତମର ଯୋଉଠିକି ଇଚ୍ଛା, ସେଠିକି ଚାଲିଯାଅ ।" ମୋର ପ୍ରତିବାଦ ଓ ଅସହାୟତାକୁ ଦେଖି ସେ ମୋତେ ଶେଷରେ ଶୁଣାଇ ଦେଲେ, "ଆଇ ହେଟ୍ ୟୁ । ୟୁ-ଗେଟ୍ ଆଉଟ୍ ଫ୍ରମ୍ ମାଇଁ ହାଉସ୍ ।"

- "ଏଥର କୁହ ବାପା ! ଏଭଳି ଘଟଣା ପରେ ବି କେଉଁ ସ୍ତ୍ରୀ ଧୈର୍ଯ୍ୟ ଧରି ଚୁପ୍‌ଚାପ୍ ରହି ପାରିବ ? ସେଦିନ ରାତିଟା ସାରା ମୁଁ କାନ୍ଦିଛି । ଆତ୍ମହତ୍ୟା

କରିବାକୁ ସ୍ଥିର ବି କରିଥିଲି । କିନ୍ତୁ ତମ କଥା ଖୁବ୍ ମନେ ପଡ଼ିଲା । ତମେ ଥରେ କହିଥିଲ, "ଆତ୍ମହତ୍ୟା ଠାରୁ କି ଆଉ ନୀଚ କାମ ନାହିଁ। ପୁଣି ଆତ୍ମହତ୍ୟା କରିଥିବା ପ୍ରାଣୀ ମୁକ୍ତି ପାଏ ନାହିଁ।"

- "ତମ କଥାକୁ ମୁଁ ଅକ୍ଷରେ ଅକ୍ଷରେ ପାଳନ କରିଛି । କିନ୍ତୁ ତମେ ପାରିଲ ନାହିଁ। ପ୍ରଦୀପର ଡିଭର୍ସ ଲେଟରକୁ ଦେଖି ତମର ହାର୍ଟ ଆଟାକ୍ ହେଲା । ସେହି ଦିନ ହିଁ ତମେ ସବୁଦିନ ପାଇଁ ଚାଲିଗଲ। ଆଉ କିଛି ଦିନ ରହିଥିଲେ, ମୋ ଦୁଃଖ ଟିକେ ଦେଖିଥା'ନ୍ତେ।

ଏତେ ପାଠପଢ଼ା, ଏତେ ଟଙ୍କା ପୁଣି ଏତେ ଭଲ ଚାକିରି ଥାଇ ମଧ୍ୟ ମୁଁ ସତରେ କାଙ୍ଗାଳୁଣୀ ହେଇ ଯାଇଛି । ବିରାଟ ଜଳରାଶି ସମୁଦ୍ର ହେଇ ବି ମୁଁ ପାଣି ଟୋପାଏ ପାଇଁ ବ୍ୟାକୁଳ । ତମେ ଥରେ ଆସି ମୋର ଅସହାୟତାକୁ ଦେଖି ଯାଅ ବାପା !"

ରୁନି ଓ ବାପୁନ୍ ହସାହସି ହେଇ ଘର ଭିତରକୁ ପଶି ଆସିଲେ। ଛନ୍ଦା ଲୁହ ପୋଛି ପକାଉଥିଲା।

ooo

(ସଦାନନ୍ଦ ତ୍ରିପାଠୀଙ୍କ ସଂପାଦିତ 'ସେମାନଙ୍କର ଶ୍ରେଷ୍ଠ ଗଳ୍ପ'
ଦୁର୍ଗାପୂଜା ବିଶେଷାଙ୍କ-୨୦୦୧)



୦୭.୦୮.୨୦୦୨
ରାଉରକେଲା